ତୃତୀୟ ବର୍ଷ, ପ୍ରଥମ ସଂଖ୍ୟା ଫେବୃଆରି, ୨୦୦୮

3rd Year, 1st Issue February, 2008

ନ୍ୟାସା ନବୋଦିତା ଉପସ୍ଥାପନ କରୁଛନ୍ତି





# ଆହ୍ୱାନ

ଓଡିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

## ଏହି ସଂସ୍କରଣରେ ରହିଛି



Please send us your valuable feedback and let us know what more changes you want in the magazine or the website.

Writers please contribute your articles for publication in this magazine “Aahwaan”.

## ସଂପାଦକୀୟ

ଦୁଇଟା ବର୍ଷର ସ୍ମୃତି ଆଖିରୁ ଲିଭେଇ ଦେଇ ନୂଆ ଗୋଟିଏ ବର୍ଷରେ ଆହ୍ୱାନର ଅବସ୍ଥିତିକୁ ଆହୁରି ସୁଦୃଢ଼ କରିବାପାଇଁ ଆଗଭର ହେଉ ହେଉ ଦ୍ୱିତୀୟ ଜନ୍ମଦିବସ ବିତି ଯାଇଥିଲା । ଅବଶ୍ୟ ଆମ (ଓଡିଆ) ଜାତିରେ ଜନ୍ମଦିନକୁ ଜାକଜମକରେ ପାଳନ କରିବା ପ୍ରଥା ନଥିବାର ନଜିର ଅନେକ ରହିଛି, ପିଲାଟି ଦିନରୁ ଜନ୍ମ ଦିନରେ ନୂଆ ପୋଷାକ ପରିହିତ କରାଇ ମା ଆମକୁ କାଠର ପିଡାରେ ବସେଇ ଦୁବ ବରକୋଳି ପତ୍ର ମିଶ୍ରିତ କିଛି ହଳଦିଆ ଚାଉଳରେ ବନ୍ଦାଣ କରୁଥିଲେ, ଅବଶ୍ୟ ସାମନାରେ ପିତଳ ଚଡୁଆରେ ଆଠ ଦଶ ଗୋଟି ଚକୁଳି ପିଠା ରଖୁଥିଲେ, ସେ ଯା'ହେଉ ଜନ୍ମ ଦିନକୁ ମନେ ନ ପକାଇଲେ ବି ସେ ପିଠାର ମହକ ଏବେ ବି ମନକୁ ଆତୁର କରି ପକାଏ । ବୟସ ବଢିଲା, ଆଉ ବିତିଗଲା ପିଲା ଦିନ, ଏବେ କାଁ ଭାଁ କେହି କେହି 'ହେପି ବାର୍ଥ ଡେ' ବୋଲି ଇଂରେଜ ଲୋକ ଛାଡିଯାଇଥିବା କିଛି ପଦକୁ ଉଚାରଣ କରନ୍ତି, ସ୍ନେହ ଯେ ନଥାଏ ତା' ନୁହେଁ କିନ୍ତୁ, ମା' ଯେମିତି ପିଡାରେ ବସେଇ ବନ୍ଦାଣ କଲାବେଳେ ମୋ ବୟସ ବି ତୋ ଦେହରେ ଲାଗିଯାଉ ରେ ଧନ କୁହେ ତାହା ଶୁଣିବାକୁ ଆଉ ମିଳେନା । ହଁ କାଚ ଗିଲାସରେ ରଙ୍ଗୀନ ପାଣିକୁ ଧରି ଠଣ୍ ଠାଣ୍ କରିବା ଯାହା ସାର ହୁଏ । ବାସ ସେଇ ନ୍ୟାୟରେ ଜନ୍ମଦିନକୁ ପାଳନ କରିବାର ଯୁ ନଥିଲା ଆଉ ନଥିଲା ରଙ୍ଗୀନ ପାଣି ପିଆଇ କିଛି ଲୋକଙ୍କୁ ଏକାଠି କରି ଏକ ପ୍ରହସନ କରିବା । ସ୍ୱଭାବତଃ ଉତ୍କଳୀୟ କୃପଣତା ହେଉ ଅବା ଅର୍ଥାଭାବ ଯୋଗୁଁ ହେଉ, ଜନ୍ମଦିନଟି କେବେ ଗଲା, କେହି ମନେ ବି ପକାଇଲେ ନାହିଁ, କିଛି ବନ୍ଧୁ ଅବଶ୍ୟ ଜନ୍ମଦିବସର ଶୁଭେଚ୍ଛା ଜଣାଇ ପତ୍ର ଦେଇଥିଲେ । କିନ୍ତୁ

ତୃତୀୟ ବର୍ଷ, ପ୍ରଥମ ସଂଖ୍ୟା ଫେବୃଆରି, ୨୦୦୮
3rd Year, 1st Issue February, 2008

ନ୍ୟାସା ନବୋଦିତା ଉପସ୍ଥାପନ କରୁଛନ୍ତି



# ଆହ୍ୱାନ

ଓଡିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

ଜନ୍ମଦିନ ଅପେକ୍ଷା ଭାଲୁକୁଣୀ ଓଷା (ଭାଲେଣ୍ଟାଇନ୍ ଡେ) ପାଇଁ ଯଥେଷ୍ଟ ଅଧିକ ବାର୍ତ୍ତା ଆସିଥିଲା ଆମ ପାଖକୁ। ଅବଶ୍ୟ ଆମ ପତ୍ରିକାକୁ ହତଶ୍ରୀ କରି ଭାଲେଣ୍ଟାଇନ୍ ଡେ ପରି ପାଶ୍ଚାତ୍ୟ ଦିବସକୁ ପାଳନ କରୁଥିବା କିଛି ବନ୍ଧୁଙ୍କୁ ଆମେ ଦୁଃଖିତ କରିବୁ ନାହିଁ, କିନ୍ତୁ କାହିଁକି କେଜାଣି ମନ ଭିତରେ କିଏ ଜଣେ ଆନ୍ଦୋଳନ କଲା ପରି ଜଣାପଡୁଥିଲା। ଦୁଃଖ ବି ଲାଗୁଥିଲା, ସେଇଥି ପାଇଁ କୌଣସି ବି ସମ୍ବାଦ ବା ବାର୍ତ୍ତାକୁ ମୁଁ ଆମ ୱେବ୍‌ସାଇଟ୍ କିମ୍ବା ପତ୍ରିକାରେ ସ୍ଥାନ ଦେବାକୁ ସଠିକ୍ ବୋଲି ଭାବି ପାରିଲି ନାହିଁ।

ଜନ୍ମ ଦିନରେ ନୂତନ ପୋଷାକ ପିନ୍ଧା ପରଂପରାକୁ ବଜାୟ୍ ରଖି 'ଆହ୍ୱାନ'ର ନବ କଳେବର କରିଦେଲି। ଏକ ନୂତନ ନାମ ଓ ପୋଷାକ ସହିତ। ବର୍ତ୍ତମାନ ମାଗିଆଣି ଦେଖାଇବା ପରିବର୍ତ୍ତେ, ଆହ୍ୱାନ ପାଖରେ ରହିଛି ନିଜସ୍ୱ ୱେବ୍ ସ୍ପେଶ୍ ବା ସ୍ଥାନ ଓ ନାମ। ଆଗରୁ ଅନ୍ୟ ୱେବ୍‌ସାଇଟ୍ ପାଖରେ ନିଜ ପାଇଁ ନାମଟିଏ ଖୋଜୁଥିବା ଆହ୍ୱାନ ଆଜି ଆହ୍ୱାନ ଡଟ୍ କମ୍ ନାମରେ ଖ୍ୟାତ। ଏହା ସହିତ ଚଳିତ ମାସରୁ ଆହ୍ୱାନ ପତ୍ରିକା ସହିତ ଯୋଡି ହୋଇଯାଇଛି ଆହୁରି ଅନେକ ଛୋଟ ଛୋଟ ୱେବ୍‌ସାଇଟ୍, ଯଥା 'ବ୍ରହ୍ମପୁର', 'ନବୋଦିତା', ଇ'ଭେଣ୍ଟ୍', କ୍ଲାସିଫାଏଡ୍, ଓ ୱେବ୍ ଷ୍ଟୁଡିଓ। ଏହି ସମସ୍ତ ୱେବ୍‌ସାଇଟ୍ ବର୍ତ୍ତମାନ ନିର୍ମାଣାଧୀନ। କିନ୍ତୁ ଖୁବ୍ ଶୀଘ୍ର ଏହି ସବୁ ୱେବ୍‌ସାଇଟ୍ ସଂପୂର୍ଣ୍ଣ ହୋଇ ଯିବ। ଦକ୍ଷିଣ ଓଡିଶାର ପ୍ରମୁଖ ସାହିତ୍ୟିକ ତଥା ବ୍ୟବସାୟିକ କେନ୍ଦ୍ର ସ୍ଥଳୀ, ବ୍ରହ୍ମପୁର ବିଷୟରେ ଅଧିକ ଜାଣିବା ପାଇଁ ଆମର ଏକ ଆରମ୍ଭ ହେଉଛି ଆମର ୱେବ୍‌ସାଇଟ୍ ବ୍ରହ୍ମପୁର। ମୋ ପିଲା ଦିନରୁ ଆଜି ପର୍ଯ୍ୟନ୍ତ ଏହି ସହର ସହିତ ମୁଁ ଅଙ୍ଗାଙ୍ଗୀଭାବେ ଜଡିତ, ଏବଂ ଏହି ସହରର ମହାନତାକୁ ଦର୍ଶାଉଥିବା ଆମର ୱେବ୍‌ସାଇଟ୍ ବ୍ରହ୍ମପୁର। ନବୋଦିତା, ଉତ୍କଳୀୟ ନାରୀ ମାନଙ୍କ ପାଇଁ ଉଦ୍ଦିଷ୍ଟ। ଓଡିଶାର ପ୍ରଥମ ଅନ୍‌ଲାଇନ୍ ଇ-ପତ୍ରିକା ଖାସ୍ ମହିଳା ମାନଙ୍କ ପାଇଁ, ଯାହା ଖୁବ୍ ଶୀଘ୍ର ମୁକ୍ତିଲାଭ କରିବାକୁ ଯାଉଛି। ଏହି ଦୁଇଟି ୱେବ୍‌ସାଇଟ୍ ବ୍ୟତୀତ ଅନ୍ୟ ସବୁ ବ୍ୟବସାୟିକ ୱେବ୍‌ସାଇଟ୍ ବିଷୟରେ ଅଧିକ ଜାଣିବାପାଇଁ ଆମ ୱେବ୍‌ସାଇଟ୍‌କୁ ଆଜି ହିଁ ଆସନ୍ତୁ। ମନେ ରଖନ୍ତୁ ଆମ ୱେବ୍‌ସାଇଟ୍‌ର ନାମ ହେଉଛି, ଆହ୍ୱାନ ଡଟ୍ କମ୍।






ଡ ଜ୍ୟୋତି ପ୍ରସାଦ ପଟନାୟକ, ସଂପାଦକ, ଆହ୍ୱାନ



ଆହ୍ୱାନ
ଓଡିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

# ଫୋନ୍ ଚୋରିକୁ ରୋକିବାପାଇଁ ସ୍ୱତନ୍ତ୍ର ଆଇନ୍ ନାହିଁ

### ମୋବାଇଲ୍ ହଜିଗଲେ ମିଳିବା ମୁସ୍କିଲ୍

ମୋବାଇଲ୍ ଫୋନ୍ ଚୋରିକୁ ରୋକିବାପାଇଁ କଲ୍ ବ୍ଲକିଂ ବା ମୋବାଇଲ୍ ଟ୍ରାକିଂ ଟେକ୍ନୋଲୋଜି ଯଥେଷ୍ଟ ନୁହେଁ। ଏହି ସମସ୍ୟା ଜଟିଳ ହେବାରେ ଲାଗିଛି । ଭାରତୀୟ ଟେଲିଫୋନ୍ ନିୟମକ ପ୍ରାଧିକରଣ (ଟ୍ରାଇ) ମଧ୍ୟ ଏ ନେଇ ଆଦୌ ଚିନ୍ତିତ ନୁହେଁ। ଆତଙ୍କବାଦୀ ମାନେ ମୋବାଇଲ୍ ଫୋନ୍‌କୁ ବେଆଇନ୍ କାର୍ଯ୍ୟରେ ବ୍ୟବହାର କରିବା କାମ ଆରମ୍ଭ କରି ଦେଇଛନ୍ତି । ଏବେ ଠାରୁ ଯାହାର ମୋବାଇଲ୍ ଚୋରି ହେଉଛି, ତାଙ୍କର ନିଦ ହଜି ଯାଉଛି ।

ଦେଶରେ ମୋବାଇଲ୍ ଫୋନ୍ ଚୋରି ସଂକଟ ଉତ୍କଟ ରୂପ ଧାରଣ କରିଛି । ନିକଟରେ ବାଙ୍ଗାଲୋର ପୋଲିସ ଘୋଷଣା କରିଥିଲା ଯେ, ପ୍ରତିମାସରେ ସହରରେ ୩୦୦ରୁ ଊର୍ଦ୍ଧ୍ୱ ମଲ୍ଟିମିଡିଆ ଫୋନ୍ ଚୋରି ହେଉଛି । ସତ କଥା ଏହା ଯେ, ଯେଉଁ ମାନଙ୍କ ଫୋନ୍ ଚୋରି ହେଉଛି, ସେମାନଙ୍କ ମଧ୍ୟରୁ ଅଧିକାଂଶ ପୋଲିସ ଷ୍ଟେସନ ଯିବାକୁ ପସନ୍ଦ କରୁନାହାନ୍ତି । ଯେଉଁ କେତେଜଣ ମାମଲା ଦାୟର କରିବାକୁ ଯାଉଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶକୁ ପୋଲିସ ତଦାରଖର ସାମନା କରିବାକୁ ପଡୁଛି । ଯେଉଁ ଫୋନ୍ ଚୋରି ହୋଇଛି, ସେଇଟା ତୁମ ନିଜର ବୋଲି କିଛି ପ୍ରମାଣ ଅଛି କି? ଫୋନ୍ କିଣିବା ବେଳେ ରସିଦ ଆଣିଥିଲେ ନା ନାହିଁ? ସେହି ରସିଦର ଏକ ନକଲ ସହ କୋର୍ଟର ସତ୍ୟପାଠ ଧରି ଆସ, ତା'ପରେ ଫୋନ୍ ଚୋରି ହେବାକଥା ବୁଝିବା । ମୋବାଇଲ୍ ଫୋନ୍ ହରାଇଥିବା ଅଧିକାଂଶ ବ୍ୟକ୍ତି ପୁଲିସ ଷ୍ଟେସନରୁ ଏହି କେଇ ପଦ ଶୁଣିବାପରେ ହଜିଯାଇଥିବା ଫୋନ୍‌କୁ ଭୁଲି, ପୁଲିସ କବଳରୁ କିଭଳି ରକ୍ଷା ମିଳିବ, ସେ ବିଷୟରେ ଚିନ୍ତା କରିବାରେ ଲାଗି ପଡନ୍ତି । ଉଲ୍ଲେଖଯୋଗ୍ୟ ଯେ ଯେତେବେଳେ ଜିଏସ୍ଏମ୍ ମୋବାଇଲ୍ ଫୋନ୍ ଚୋରି ହୁଏ, ସେତେବେଳେ ଗ୍ରାହକ ପ୍ରଥମେ ଅପରେଟରଙ୍କୁ ଫୋନ୍ କରି ସିମ୍ (ସବ୍ସ୍କ୍ରାଇବର ଆଇଡେଣ୍ଟିଟି ମଡ୍ୟୁଲ୍)କୁ ବ୍ଲକ୍ କରିବା ଲାଗି ଅନୁରୋଧ କରିଥାନ୍ତି । ସିମ୍ ବ୍ଲକ୍ କରିବା ପଛରେ ତିନି କାରଣ ରହିଛି । ପ୍ରଥମଟି ହେଲା ଚୋର ଯେମିତି ଫୋନ୍‌ରେ ଥିବା ତଥ୍ୟ ହାସଲ ନ କରୁ । ଦ୍ୱିତୀୟରେ ସେହି ତଥ୍ୟକୁ କୌଣସି ବେଆଇନ୍ କାର୍ଯ୍ୟରେ ବ୍ୟବହାର ନ କରିବା ଓ ତୃତୀୟ କାରଣଟି ହେଲା ଲମ୍ବା ଫୋନ୍ ବିଲ୍‌ରୁ ମୁକ୍ତି ପାଇବା । ଏହି ସାଧାରଣ କଥା ଯେ, ମୋବାଇଲ୍ ଫୋନ୍‌ଟିକୁ ଯଦି ଚୋର ବିକ୍ରୀ କରିବାକୁ ଚାହୁଁଥିବ, ତେବେ ସିମ୍‌ଟିକୁ କାଢି ଫୋପାଡି ଦେବ ।

### ସମାଧାନର ସହଜ ଉପାୟ

ସାରା ବିଶ୍ୱର ପୋଲିସ ଅଧିକାରୀ ନିଶ୍ଚିତ ହୋଇ ସାରିଲେଣି ଯେ, ମୋବାଇଲ୍ ଫୋନ୍ ଚୋରିକୁ ରୋକିବାର ଏକ ମାତ୍ର ଉପାୟ ହେଲା, ଉପକରଣକୁ ସଂପୂର୍ଣ୍ଣ ଅଚଳ କରିଦେବା । ଏହା ସମ୍ଭବ ହେଲେ ଚୋରପାଇଁ ମୋବାଇଲ୍ ଫୋନ୍‌ଟି ପ୍ଲାଷ୍ଟିକ୍ ଖେଳଣାଠାରୁ ହୀନ ହୋଇଯିବ । ଏହା 'ଇଣ୍ଟର୍‌ନ୍ୟାସନାଲ୍ ମୋବାଇଲ୍ ଇକ୍ୱିପ୍‌ମେଣ୍ଟ ଆଇଡେଣ୍ଟିଟି ନମ୍ବର' (ଆଇଏମ୍ଇଆଇ) ମାଧ୍ୟମରେ ସମ୍ଭବପର । ବିଶ୍ୱର ସମସ୍ତ ମୋବାଇଲ୍ ଫୋନ୍‌ରେ ଏହି ନମ୍ବର ରହିଛି । ଷ୍ଟାର ହ୍ୟାଚ୍ ୦୬ ହ୍ୟାଚ୍ ଟାଇପ୍ କଲେ ଏକ ପନ୍ଦର ଟିକିଆ ନମ୍ବର ସମସ୍ତ ମୋବାଇଲ୍ ହ୍ୟାଣ୍ଡସେଟ୍ ଉପରେ ଭାସି ଉଠିବ । ଫୋନ୍ ଚୋରି ହେବା ମାତ୍ରେ, ଯଦି ଏହି ନମ୍ବରକୁ ସମସ୍ତ ମୋବାଇଲ୍ ନେଟ୍‌ୱାର୍କ ବ୍ଲକ୍ କରି ଦିଅନ୍ତି, ତେବେ ଚୋରି



ଆହ୍ୱାନ
ଓଡିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

ହୋଇଥିବା ହ୍ୟାଣ୍ଡସେଟ୍‌କୁ ବ୍ୟବହାର କରାଯାଇ ପାରିବ ନାହିଁ। ଏହି ସେବା ଆରମ୍ଭ କରିବାକୁ ହେଲେ ଟେଲିକମ୍ ଅପରେଟରଙ୍କୁ ସେଣ୍ଟ୍ରାଲ୍ ମୋବାଇଲ୍ ଇକ୍ୱିପ୍‌ମେଣ୍ଟ୍ ରେଜିଷ୍ଟାର ବ୍ୟବସ୍ଥା ଆରମ୍ଭ କରିବାକୁ ପଡିବ, ଯାହା ବ୍ୟୟସାପେକ୍ଷ। ଆଇଏମଇଆଇ ନମ୍ବର ଇଣ୍ଟର୍‌ନେଟରେ ଉପଲବ୍ଧ ହେବା ଦରକାର। କାରଣ କୌଣସି ବ୍ୟକ୍ତି ନୂଆ ଫୋନ୍ ଅବା ବ୍ୟବହୃତ ଫୋନ୍ କିଣିବା ବେଳେ, ତାହା ଚୋରି ମୋବାଇଲ୍ ନୁହେଁ ବୋଲି ତୁରନ୍ତ ଜାଣିପାରିବେ। ଅନେକ ରାଷ୍ଟ୍ରରେ ଏହି ବ୍ୟବସ୍ଥା ଲାଗୁ ହୋଇସାରିଲାଣି। ଭାରତରେ ଏହି ବ୍ୟବସ୍ଥାକୁ ଲାଗୁ କରିବା ଲାଗି ଅପରେଟରଙ୍କ ମଧ୍ୟରେ ଆଗ୍ରହ ନଥିବା ଭଳି ମନେ ହେଉଛି। ଭାରତୀୟ ଟେଲିକମ୍ ନିୟାମକ ପ୍ରାଧିକରଣ (ଟ୍ରାଇ) ମୋବାଇଲ୍ ଫୋନ୍ ଚୋରିକୁ ରୋକିବାଲାଗି ୨୦୦୪ରେ ଏକ ଚିଠା ପ୍ରସ୍ତୁତ କରିଥିଲେ। ତାହା ଲାଗୁ ହୋଇପାରିଲା ନାହିଁ। ଏବେ ସଫ୍‌ଟୱେର୍ କଂପାନୀଗୁଡିକ ଚୋରି ମୋବାଇଲ୍‌କୁ ଖୋଜିବାଲାଗି ବିଭିନ୍ନପ୍ରକାର ଟ୍ରାକିଂ ସଲ୍ୟୁସନ୍ ପ୍ରଦାନ କରୁଛନ୍ତି। ମୋବାଇଲ୍ ଫୋନ୍ ଚୋରି ରୋକିବାକୁ ହେଲେ ହ୍ୟାଣ୍ଡସେଟ୍ ନିର୍ମାତା, ଅପରେଟର, ପୋଲିସ୍ ଓ ଟ୍ରାଇକୁ ମିଳିତ ଭାବରେ କାମ କରିବାକୁ ହେବ।

ସମ୍ବାଦ, ସୋମବାର, ଜାନୁଆରି ୨୮, ୨୦୦୮



# ଶୀତରେ ଦିଲ୍ଲୀ

**ପଥେ ପ୍ରାନ୍ତରେ**

**ମୃଣାଳ**

ନିହାତି କାମ ନଥିଲେ ଡିସେମ୍ବର-ଜାନୁଆରିର ଶୀତରେ କେହି ଦିଲ୍ଲୀ ଯିବାକୁ ବାହାରନ୍ତି ନାହିଁ। ସେଠି ଭାରି ଶୀତ। ମୋତେ ଯିବାକୁ ପଡିଲା। ସେଠି ଏ ବର୍ଷ ଜାତୀୟ ବିଜ୍ଞାନ ସଂଚାର କଂଗ୍ରେସ୍ (ନ୍ୟାସନାଲ୍ ସାଇନ୍‌ସ କମ୍ୟୁନିକେସନ୍ କଂଗ୍ରେସ୍ ୨୦୦୭) ହେଲା ଯେ, ଏଠି ବିଭିନ୍ନ ଆଡୁ ସାଇନ୍‌ସ କମ୍ୟୁନିକେସନ୍‌ରେ କାମକରୁଥିବା ବୈଜ୍ଞାନିକ, ସାମ୍ବାଦିକ, ଲେଖକ ମାନେ ଏକାଠି ହୁଅନ୍ତି। ନିଜ ନିଜର ପ୍ରବନ୍ଧ ପଢନ୍ତି। ଗବେଷଣା ପତ୍ର ଉପସ୍ଥାପନା କରନ୍ତି।

ଆପଣ ମାନେ ଲକ୍ଷ୍ୟ କରିଛନ୍ତି କି ନାହିଁ, ବିଭିନ୍ନ ସହରର ଶୀତର ଚେହେରା ଆଉ ଚରିତ୍ର ବି ଅଲଗା ଅଲଗା। ଭୁବନେଶ୍ୱରର ଶୀତ କି କୋଲକାତାର ଶୀତ ଆଉ ଦିଲ୍ଲୀର ଶୀତ ଏକା ପରି ନୁହେଁ। ଦିଲ୍ଲୀର ଶୀତ ଦିଲ୍ଲୀର ଚରିତ୍ର ଭଳି; ଶକ୍ତିହୀନ ଦୁର୍ବଳ ଉପରେ ବଡ ହାକିମାତି ଆଉ ଥିଲାବାଲା, ଶକ୍ତିବାନ୍ ପାଖରେ ନତମସ୍ତକ। ଦେହରେ ଯଦି ଭଲ ଗରମ ପୋଷାକ, କାରରେ, ଘରେ ହିଟର ଲାଗିଛି, ସନ୍ଧ୍ୟାପରେ ପେଟରେ ଉଷ୍ଣ ପାନୀୟ କିଛି ପଡି ପାରୁଛି- ତେବେ ଦିଲ୍ଲୀର ଶୀତ ଭଳି ଆରାମଦାୟକ ଋତୁ ଆଉ କିଛି ନାହିଁ। କିନ୍ତୁ ଆପଣ ଯଦି ଦୁର୍ବଳିଆ-ତେବେ ଦିଲ୍ଲୀର ଶୀତ ଆପଣଙ୍କୁ ମାଡି ବସିବ। କାବୁ କରି ପକେଇବ।

**ବାର୍ଡ୍ ଫ୍ଲୁ**

ଭାରତରେ ବାର୍ଡ୍ ଫ୍ଲୁ ବ୍ୟାପିଛି ବୋଲି ଖବରକାଗଜରେ ଖବର ପଡି ମୋ ପତ୍ନୀ ଫରମାନ୍ ଜାରି କରିଦେଲେ, ଘରେ ଆଉ କୁକୁଡା ପଶିବନି।



ଆହ୍ୱାନ
ଓଡିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

-ଅଣ୍ଡା? ମୁଁ ପଚାରିଲି।

-ନା କୁକୁଡା ନା ଅଣ୍ଡା- କିଛି ପଶିବନି; କୁକୁଡା ଖାଇ ମରିବନା କଣ!

ଏଇଥିପାଇଁ ମୁଁ ବନ୍ଧୁମାନଙ୍କୁ କହେ, ଘରକୁ ଖବର କାଗଜ ମଗାଇବା ଉଚିତ ନୁହେଁ। ମୁଁ କୁକୁଡା ଖାଇବାକୁ ଭଲ ପାଏ। ଅଣ୍ଡା ଖାଇବାକୁ ବି ଭଲପାଏ। ସଣ୍ଡେ ହେଉ ବା ମଣ୍ଡେ, ଡେଲି ଦି'ଟା ଅଣ୍ଡା ନିଶ୍ଚୟ ଖାଏ। ତେଣୁ ଘରେ କୁକୁଡା ମନା କରିବାକୁ ମୋତେ ବଡ ବାଧିଲା।

ସେଇ ରାତିରେ ସ୍ୱପ୍ନ ଦେଖିଲି, ଗୋଟିଏ ନାଲି ଚୁଳବାଲା ଧଳା କୁକୁଡା ମୋତେ କହୁଛି; ଆରେ ମୂର୍ଖଦଳ! ଗୀତାର ବାଣୀ ଭୁଲିଗଲ। ଯେବେ ଯେବେ ଦୁନିଆରେ ଅଧର୍ମ ବଢିଯାଏ, ପାପୀମାନଙ୍କୁ ନିଧନ କରିବା ପାଇଁ ଆଉ ପୁଣ୍ୟାତ୍ମାଙ୍କୁ ରକ୍ଷା କରିବାପାଇଁ ସ୍ୱୟଂ ଭଗବାନ ବ୍ୟବସ୍ଥା କରନ୍ତି। ତୁମେମାନେ ଆମକୁ ଖାଇବାପାଇଁ ବଡ ହଙ୍କର ପଙ୍କର ହେଉଥିଲ, ସବୁଦିନ ସନ୍ଧ୍ୟାରେ ଚିକେନ୍ କବାବ୍, ଚିକେନ୍ ଟିକ୍କା। ସାଙ୍ଗରେ ଟିକେ ଟିକେ ନାଲି ପାଣି। ଶାସ୍ତ୍ର କହୁଛି; ସାତ୍ତ୍ୱିକ ଆହାର କର। ନିରାମିଷ ଭକ୍ଷଣ କର। ମାଂସ ହେଲା ତାମସିକ ଖାଦ୍ୟ। ତା'କୁ ଖାଆନି। ତୁମେ ଶଳେ ତ ଭଲ କଥା କିଛି ଶୁଣିବନି। ଯାବତୀୟ ଅନାଚାର କରିବ। ସେଥିପାଇଁ ଈଶ୍ୱର ଆମକୁ ବଞ୍ଚେଇବା ପାଇଁ ଏ ରୋଗ ପେଶିଦେଲେ। ଆରେ ପାପୀଦଳ। ଏବେ ବି ସମୟ ଅଛି ସୁଧୁରି ଯାଅ। ନହେଲେ ଫ୍ଲୁରେ ଖତମ ହୋଇଯିବ।

-ନିଦ ଭାଙ୍ଗିଗଲା। ଦେଖିଲି ମୋ ଦେହ ସାରା ଝାଳରେ ଓଦା। ଭାବିଲି ସ୍ୱପ୍ନରେ କୁକୁଡା ସତ କହୁଛି। ସାତ୍ତ୍ୱିକ ଆହାର କରିବା ଉଚିତ। ଶାସ୍ତ୍ରରେ ମୁନିଋଷୀମାନେ ନିରାମିଷ ଖାଇବା କେତେ ଭଲ- ତା ଉପରେ ବହୁ କଥା କହୁଛନ୍ତି। ଏବେକାର ଧର୍ମଗୁରୁ, ଯୋଗଗୁରୁମାନେ ବି କହୁଛନ୍ତି। ରସନାର ଲୋଭକୁ ଯଦି ସମ୍ବରଣ କରି ନ ପାରିବି, ତେବେ ମୁଁ କି ମଣିଷ। ଏମିତି ସବୁ ଭାବି ଠିକ୍ କଲି, ଏବେଠୁଁ କେବଳ ନିରାମିଷ।

ଦୁଇଦିନ ନିରାମିଷ ଖାଇବାପରେ ପତ୍ନୀକହିଲେ, ଆହେ, ତମ ସାତ୍ତ୍ୱିକ ଆହାର ତୁମ ପାଖରେ ଥାଉ। ଆମ ପାଇଁ ଆମିଷ କିଛି ଆଣ। କୁକୁଡାଙ୍କୁ ସିନା ଫ୍ଲୁ ହେଇଛି, ଖାସିଙ୍କୁ ତ କିଛି ହେଇନି। ଖାସି ମାଂସ ଆଣୁନ।

## ବାର୍ଡ ଫ୍ଲୁ- ୨

ଗୋବରୀର ମନ ଆଜି ଭାରି ଉଲ୍ଲାସ। ଆଜି ତାଙ୍କ ଘରେ କୁକୁଡା ମାଉଁସ ତରକାରୀ। ଗୋବରୀ ଭାରି ବାଜେ ଧରଣର ଗରିବ। ସେମାନଙ୍କର ନିଜର ବୋଲି କିଛି ନାହିଁ। ନା ଘର ନା ଜମିବାଡି। ସେମାନେ ରେଳଷ୍ଟେସନ ପାଖ ଖାଲି ଜାଗାରେ ସରକାରୀ ଜମିରେ ପାଲ ମାରି ରହନ୍ତି। ତା ବାପା ମୂଲ ଲାଗେ। ମା ପରଘରେ ବାସନ ମାଜେ। ସେ ବ୍ୟାଗ୍ କାନ୍ଧରେ ଧରି ଜରି ଗୋଟାଏ। ସେମାନେ ସବୁଦିନ ଖାଇବାକୁ ପାଆନ୍ତି ନାହିଁ। ମାଛ ମାଉଁସ ତ ସପନ।

ଆଜି ଗୋବରୀର ବାପା ମାଉଁସ ଆଣିଛନ୍ତି। ଗୋବରୀର ମା' ପଚାରିଲା, ଆଜି କେମିତି ମାଉଁସ ଆଣିଲ?

-ଆରେ, ଆଜି କୁକୁଡା ଭାରି ଶସ୍ତା ହୋଇଛି। ଚାଳିସ ଟଙ୍କା କିଲୋ। ସେଥିପାଇଁ ଆଣିଲି।

-କୁକୁଡା? ଶୁଣୁଥିଲି କୁକୁଡାଙ୍କୁ କଣ ରୋଗ ହେଇଚି। ତାକୁ ଯିଏ ଖାଇବ ମରିଯିବ।

-ମରିଯିବ? ଆରେ ଆମେ କୋଉ ବଞ୍ଚିଛନ୍ତି ଯେ ଖାଇଦେଲେ ମରିଯିବୁ?

ସେମାନେ ଆନନ୍ଦରେ କୁକୁଡା ମାଂସ ଖାଇଲେ। ସେମାନେ ଏବେ ବି ବଞ୍ଚିଛନ୍ତି।

ତୃତୀୟ ବର୍ଷ, ପ୍ରଥମ ସଂଖ୍ୟା ଫେବୃଆରି, ୨୦୦୮

3rd Year, 1st Issue February, 2008

ନ୍ୟାସା ନବୋଦିତା ଉପସ୍ଥାପନ କରୁଛନ୍ତି



# ଆହ୍ୱାନ

ଓଡିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

## ଏସ୍ ଏମ୍ ଏସ୍

ଏବେ ଗୋଟେ ଏସ୍ ଏମ୍ ଏସ୍ ପାଇଲି।

ଡ୍ରାଇଭ୍ ୱିଥ୍ କେୟାର,
ନଟ୍ ଟୁ ଡେୟାର,
ଆଜ୍ ଲାଇଫ୍ ହାଜ୍ ନୋ ସ୍ପେୟାର୍,
କସନ୍ ଏଣ୍ଡ୍ କେୟାର,
ମେକ୍ ଆକ୍ସିଡେଣ୍ଟ୍ ରେୟାର।

ଏହାକୁ ପଠାଇଛନ୍ତି ରୋଡ୍ ସେଫଟି ସୋସାଇଟି ଆଉ ଆର୍ ଟି ଏ ଢେଙ୍କାନାଳ।

pathepranare@india.com

ସଂଚାର ମାର୍ଗ, ଢେଙ୍କାନାଳ-୭୫୯୦୦୧

ସୋମବାର, ଜାନୁଆରି ୨୮, ୨୦୦୮

## ଭାଲେଣ୍ଟାଇନ୍ସ ଡେ

ଫେବୃଆରି ୧୪ ତାରିଖ ହେଲା ଭାଲେଣ୍ଟାଇନ୍ସ ଡେ। ଏ ଦିବସଟି ଏବେ ପ୍ରେମ ଓ ବନ୍ଧୁତ୍ୱର ଦିବସ ଭାବେ ପାଳନ କରାଯାଉଛି। ବିଶେଷ ଭାବେ ପ୍ରେମୀମାନେ ଏ ଦିନଟିକୁ ଜୋରଦାର ଭାବେ ପାଳନ କରୁଛନ୍ତି। ଆଗରୁ ଓଡିଶାରେ ଏହାର ପ୍ରଚଳନ ବିଶେଷ ନଥିଲା, ଏବେ ଚାରିପାଞ୍ଚ ବର୍ଷ ହେଲା, ଦେଖୁଛି ଭାଲେଣ୍ଟାଇନ୍ସ ଡେ ସହର ବଜାରରେ ତ ନିଶ୍ଚୟ, ଗାଁ ଗହଳିରେ ବି ଧସେଇ ପଶିଲାଣି। ଗାଁ ମୁଣ୍ଡ ପାନ ଦୋକାନରେ ବି ଭାଲେଣ୍ଟାଇନ୍ସ ଡେ କାର୍ଡ ବିକ୍ରି ହେଉଛି।

ଏ ଦିନରେ ପ୍ରେମୀମାନେ ପରସ୍ପରକୁ ଫୁଲ ଦିଅନ୍ତି, ଉପହାର ଦିଅନ୍ତି, କାର୍ଡ ପଠାନ୍ତି, ମେସେଜ ପଠାନ୍ତି। ଖବର କାଗଜବାଲାଏ ବି ଟଙ୍କା ନେଇ ଏମିତି ମେସେଜ ଛାପିଲେଣି। ମୁମ୍ବାଇରେ ଗୋଟିଏ କାଗଜରେ ଛପା ହୋଇଥିବା କେତୋଟି ଭାଲେଣ୍ଟାଇନ୍ସ ଡେ ମେସେଜ୍ ଏଠି ପାଠକମାନଙ୍କ ପାଇଁ ଉପସ୍ଥାପନ କରୁଛି।

ନା ଜୁବାନ୍ ସେ, ନା ନିଗାହୋଁ ସେ
ନା ଦିମାଗ୍ ସେ, ନା ରଙ୍ଗୋ ସେ
ନା ଗ୍ରିଟିଂ ସେ, ନା ଗିଫ୍ଟ ସେ
ଆପ୍‌କୋ ହେପି ଭାଲେଣ୍ଟାଇନ୍ସ ଡେ
ଡାଇରେକ୍ଟ ଦିଲ୍‌ସେ।।

ତୁମ୍‌ହେ ଦିଲ୍ ମେ ବସାଏ ରଖତା ହୁଁ
ଔର୍ ଦୁନିଆଁକୋ ଭୁଲାଏ ରଖତା ହୁଁ
ତୁମ୍‌ହେ ମେରି ନଜର ନ ଲଗ୍ ଜାଏଁ
ଅପନି ନଜର ଝୁକାଏ ରଖତା ହୁଁ।

ୟୁ ଆର୍ ମାଇଁ ସୁଇଟ୍ ସଙ୍ଗ,
ଆଇ ଡିଡ୍ ନଟ ୱାଣ୍ଟ ୟୁ ଟୁ ଖୋନା
ଆଇ ୱାଣ୍ଟ ଏ ପ୍ଲେସ୍ ଇନ୍ ୟୋର୍
ହାର୍ଟସ୍ କୋନା
ଅଦରୱାଇଜ୍ ଆଇ ସାଲ୍ ଷ୍ଟାର୍ଟ ରୋନା।

ହର୍ ଖୁସି ହସିଁ ମାଙ୍ଗେ ଆପ୍‌ସେ
ହର୍ ଫୁଲ୍ ଖୁସ୍‌ବୁ ମାଙ୍ଗେ ଆପ୍‌ସେ
ଇତ୍‌ନି ରୋଶନି ହୋ ଆପକି ଜିନ୍ଦଗୀମେଁ
ଖୁଦ୍ ବିଜଲୀବାଲେ କନେକ୍‌ସନ ମାଙ୍ଗେ ଆପସେ।।

କିସ୍ ଇଜ୍ ନଟ ଲାଇକ୍ ନୋକିଆ
କନେକ୍ଟିଂ ପିପୁଲ୍
କିସ୍ ଇଜ୍ ନଟ ଲାଇକ ନାଇକେ
ଜଷ୍ଟ୍ ଡୁ ଇଟ୍

ତୃତୀୟ ବର୍ଷ, ପ୍ରଥମ ସଂଖ୍ୟା ଫେବୃଆରି, ୨୦୦୮

ନ୍ୟାସା ନବୋଦିତା ଉପସ୍ଥାପନ କରୁଛନ୍ତି

3rd Year, 1st Issue February, 2008






କିସ୍ ଇଜ୍ ନଟ ଲାଇକ୍ ପେପ୍‌ସୀ
ୟେ ଦିଲ୍ ମାଙ୍ଗେ ମୋର
ବଟ୍ କିସ୍ ଇଜ୍ ନଟ ଲାଇକ୍ ପାନ୍ ପରାଗ
ଏକ୍ ସେ ମେରା କ୍ୟା ହୋଗା ।

### ଚଳଚ୍ଚିତ୍ର ଉତ୍ସବ

ଯତୀନ ଦାସ ସେଣ୍ଟର ଫର କ୍ରିଏଟିଭ ଆର୍ଟ୍ (ଜେଡିସିଏ) ପକ୍ଷରୁ ଜାନୁଆରି ୨୮ ରୋ ୩୦ ତାରିଖ ପର୍ଯ୍ୟନ୍ତ ଭୁବନେଶ୍ୱର କଳା ଓ କଳାକାର (ଆର୍ଟ୍ ଏଣ୍ଡ ଆର୍ଟିଷ୍ଟସ) ଶୀର୍ଷକ କ୍ଷୁଦ୍ର ଓ ପ୍ରାମାଣିକ ଚଳଚ୍ଚିତ୍ର ଉତ୍ସବ ହୋଇଗଲା ।

ସାରା ଦେଶରେ ବିଷୟ କେନ୍ଦ୍ରିକ ପ୍ରମାଣିତ ଚଳଚ୍ଚିତ୍ର ଉତ୍ସବ ଖୁବ୍ ବେଶି ଆୟୋଜିତ ହୁଏ ନାହିଁ । ସେ ଦୃଷ୍ଟିରୁ ଏ ଉତ୍ସବ ଏକ ଭିନ୍ନ ମାନ୍ୟତା ରହିଛି । ତା'ପରେ ଏ ଉତ୍ସବରେ କେତେ କେତେ ଲୋକ ଆସିଥିଲେ । ଅମୋଲ୍ ପାଲେକର, ଗୌତମ୍ ଘୋଷଙ୍କ ଭଳି ପ୍ରସିଦ୍ଧ ଚଳଚ୍ଚିତ୍ର ନିର୍ଦ୍ଦେଶକ, ଦିକ୍‌ପାଳ ପ୍ରାମାଣିକ ଚଳଚ୍ଚିତ୍ର ନିର୍ମାତା, ଶିଳ୍ପୀ, ସାହିତ୍ୟିକ, କଳାକାର ମାନେ ସେଠି ଏକାଠି ହୋଇଥିଲେ । ପରିବେଶ ବି ଥିଲା ସୁନ୍ଦର ।

ହେଲେ ଏମିତି ଏକ ଉତ୍ସବରେ ଯେତେ ଦର୍ଶକ ଆଶା କରାଯାଉଥିଲା, ସେତେ ନଥିଲେ । ଦର୍ଶକ ଅଧିକ ନ ହେବାର ବହୁତ କାରଣ ଥାଇପାରେ । ହେଲେ ଯେଉଁମାନେ ଏ ଉତ୍ସବକୁ ଯାଇ ପାରିଲେନି- ସେମାନେ ଭଲ ଜିନିଷ ଗୋଟେ ମିସ୍ କଲେ । ମୋର ପରାମର୍ଶ- ଆସନ୍ତା ବର୍ଷ ମିସ୍ କରିବେନି ।

### ସରସ୍ୱତୀ ପୂଜା

ସରସ୍ୱତୀ ପୂଜା ଆସିଲେ ମୋର ମନ ଭାରି ଖୁସି ହୋଇଥାଏ । ପିଲାବେଳୁ ଏ ଯାଏଁ । ପିଲାବେଳେ ଖୁସି ହେବାର କାରଣ ଥିଲା; ଏ ପୂଜାରେ ମୋର ନୂଆ ଜାମା ପ୍ୟାଣ୍ଟ୍ ହେଉଥିଲା । କୈଶୋରରେ ଖୁସି ହେବାର କାରଣ ଥିଲା; ସରସ୍ୱତୀ ପୂଜା ବେଳେ ସ୍କୁଲ୍‌ରେ ଭୋଜି ହେଉଥିଲା । ଯୌବନରେ ଖୁସି ହେବାର କାରଣ ଥିଲା । ଏ ଦିନରେ ସହପାଠିନୀ ବାନ୍ଧବୀମାନଙ୍କ ସାହଚର୍ଯ୍ୟ ଅଧିକ ମିଳୁଥିଲା । ଏବେ ମଧ୍ୟ ବୟସରେ ଖୁସି ହେଉଛି; ଇଏ ହେଲା ପୂଜା ସିଜନ୍‌ର ଲାଷ୍ଟ ପୂଜା । ଏହାପରେ ଆଉ ପୂଜା ନାହିଁ-ତେଣୁ ଚାନ୍ଦା ଦେବାର ଝମେଲା ନାହିଁ, ପିଲାମାନଙ୍କୁ ନୂଆ ଲୁଗାପଟା କିଣି ଦେବାର ନାହିଁ । ଅଗଷ୍ଟ-ସେପ୍‌ଟେମ୍ବର ଗଣେଶ ପୂଜା ସହିତ ନୂଆ ପୂଜା ସିଜନ୍ ଆରମ୍ଭ । ଯାଃ ଶାନ୍ତି ।

### ଜନ୍ମ ଦିନର ଶୁଭେଚ୍ଛା

ମୋ ଜନ୍ମ ଦିନ ପଡିବ ଫେବୃଆରି ଦଶରେ । ସେ ଅବସରରେ ମୋର ଜଣେ ବନ୍ଧୁ ଆଗତୁରା ଏଇ ଏସ୍ ଏମ୍ ଏସ୍‌ଟି ପଠେଇଛନ୍ତି । ଏହାକୁ ମୁଁ ଶୁଭେଚ୍ଛା ଭାବରେ ନେବି ନା ଚେତାବନୀ ଭାବରେ ନେବି ଆପଣମାନେ ଠିକ୍ କରନ୍ତୁ:

ବାଗୋମେଁ ଫୁଲ୍ ଖିଲ୍‌ତେ ରହେଙ୍ଗେ
ରାତୋମେଁ ଦୀପ୍ ଜଲ୍‌ତେ ରହେଙ୍ଗେ
ଖୁଦା ଆପକୋ ସାରି ଖୁସିଆଁ ଦେ ଦେ
ବାକି ତକଲିଫ୍, ହୋ ହମ୍ ଆପକୋ ଦେତେ ରହେଙ୍ଗେ ।

ଶନିବାର, ଫେବୃଆରି ୯, ୨୦୦୮



ତୃତୀୟ ବର୍ଷ, ପ୍ରଥମ ସଂଖ୍ୟା ଫେବୃଆରି, ୨୦୦୮

ନ୍ୟାସା ନବୋଦିତା ଉପସ୍ଥାପନ କରୁଛନ୍ତି

3rd Year, 1st Issue February, 2008



# ଆହ୍ୱାନ

ଓଡ଼ିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

## ଚଳୁ ଚାଲିଥାଉ, ତଦନ୍ତ ବି ଚାଲୁ

ରାଜ୍ୟ ରାଜନୀତି

ଗୋପାଳ ମିଶ୍ର

ଏଥରର ସ୍ତମ୍ଭରେ ନିର୍ବାଚନ ମଣ୍ଡଳୀ ପୁନର୍ଗଠନ ପରି କେତେକ ପ୍ରସଙ୍ଗ ଉପରେ ଆଲୋଚନା କରିବା ପାଇଁ ମନସ୍ଥ କରିଥିଲି। କିନ୍ତୁ ଇତିମଧ୍ୟରେ ଦୁର୍ନୀତିର ତାଲିକା ଏପରି ଭାବରେ ଲମ୍ବି ଚାଲିଛି ଯେ ତାକୁ ଆଖି ବୁଜିଦେବା ସମ୍ଭବ ହେଲା ନାହିଁ। ୧୯୯୯ ସାଲ୍‌ର ମହାବାତ୍ୟାଗ୍ରସ୍ତ ଅଞ୍ଚଳର ଲୋକଙ୍କୁ ସାହାଯ୍ୟ ଦେବାରେ ଦୁର୍ନୀତି ଓ କାଳକ୍ଷେପଣ, ଖଟିଖିଆ ଗରିବଙ୍କ ପାଇଁ ଉଦ୍ଦିଷ୍ଟ ଗ୍ରାମୀଣ ନିଶ୍ଚିତ ନିଯୁକ୍ତି ଯୋଜନାରେ ଦୁର୍ନୀତି, ଇନ୍ଦିରା ଆବାସ ଯୋଜନାରେ ଦୁର୍ନୀତି ଇତ୍ୟାଦି ସର୍ବସ୍ୱୀକୃତ କଥା। ପୁଣି ଏଇ କିଛି ସପ୍ତାହ ତଳେ ପ୍ରକାଶ ପାଇଥିଲା ଯେ ବାରିପଦା ନିକଟରେ ସ୍ୱତନ୍ତ୍ର ରିହାତି ମୂଲ୍ୟରେ ଦାରିଦ୍ର୍ୟ ସୀମାରେଖା ତଳେ (ବି ପି ଏଲ୍) ଥିବା ଲୋକଙ୍କୁ ଦେବାକୁ ଆସିଥିବା ହଜାରେ ବସ୍ତା ଚାଉଳ ୫ ଟ୍ରକରେ ଚାଲାଣ ହେଉଥିବା ବେଳେ ଧରାପଡ଼ିଛି। ବାରିପଦା ସଂଲଗ୍ନ ପାଞ୍ଚନମ୍ବର ଜାତୀୟ ରାଜପଥରେ ଟ୍ରକ୍ ଗୁଡ଼ିକୁ ଜବତ କରାଯାଇଛି। ବିପିଏଲ୍ ଶ୍ରେଣୀପାଇଁ ଉଦ୍ଦିଷ୍ଟ ବିଭିନ୍ନ କାର୍ଯ୍ୟକ୍ରମରେ ଯେ ଦୁର୍ନୀତି ପୁରି ରହିଛି ଏ କଥା ମଧ୍ୟ କାହାରିକୁ ଅଛପା ନାହିଁ। ବିପିଏଲ୍ ବର୍ଗଙ୍କ ପାଇଁ ଥିବା ସୁବିଧା ଦାରିଦ୍ର୍ୟ ସୀମାରେଖା ଉପରେ ଥିବା (ଏପିଏଲ୍) ଲୋକେ କରାୟତ କରୁଥିବାର ମଧ୍ୟ ଦୃଷ୍ଟାନ୍ତ ରହିଛି। କେନ୍ଦ୍ର କହୁଛି ୨୦୦୨ ସାଲ୍‌ରେ ଯେଉଁ ବିପିଏଲ୍ ତାଲିକା ହୋଇଛି ସେଥିରୁ ଗରିବ ଲୋକଙ୍କ ସଂଖ୍ୟା କମାଅ। ରାଜ୍ୟ ସରକାର ନିଜର ତଥ୍ୟ ଅନୁଯାୟୀ ପ୍ରସ୍ତୁତ କରିଥିବା ତାଲିକା କାଣ୍ଟଛାଣ୍ଟ କଲେ ରାଜନୈତିକ ଦୃଷ୍ଟିରୁ ବେଶ୍ ଅଡୁଆରେ ପଡ଼ିଯିବେ। ଫଳରେ ଏ ପର୍ଯ୍ୟନ୍ତ ଟଣା ଓଟରା ଚାଲିଛି। ତାଲିକା ଚୂଡ଼ାନ୍ତ କରାଯାଇ ପାରୁନାହିଁ।

ଏହାବ୍ୟତୀତ ନିକଟ ଅତୀତରେ ଚୋରା ମଦ କାରବାର, ନକଲି ଔଷଧ ବ୍ୟାପାର ଏବଂ ତେଲଠାରୁ ତେଜରାତି ପର୍ଯ୍ୟନ୍ତ ସବୁଥିରେ ଅପମିଶ୍ରଣର ବ୍ୟାପକତା ଦାଣ୍ଡରେ ପଡ଼ି ହାଟରେ ଗଡ଼ୁଛି। ବର୍ଷ ବର୍ଷ ଧରି ଏହା ଚାଲୁଥିଲା।

ଏବେ ବିଶ୍ୱବ୍ୟାଙ୍କ ସହାୟତାରେ ୧୯୯୮ରୁ ଆରମ୍ଭ ହୋଇଥିବା ୪୧୫ କୋଟି ଟଙ୍କାର ରାଜ୍ୟ ସ୍ୱାସ୍ଥ୍ୟ ସେବା ବିକାଶ ପ୍ରକଳ୍ପରେ ଯେଉଁ ଦୁର୍ନୀତିର ପର୍ଦାଫାସ ହୋଇଛି ତାହା ସବୁଠାରୁ ବଳିପଡ଼ିଛି। ୨୦୦୪ରେ ଯେଉଁ ପ୍ରକଳ୍ପ ମୁଣ୍ଡି ମରାଯିବା କଥା ତାହା ୨୦୦୬ ପର୍ଯ୍ୟନ୍ତ ଚାଲିଲା। ବାରମ୍ବାର ପ୍ରକଳ୍ପର ଅବଧି ବଢ଼ାଇବା ପାଇଁ ରାଜ୍ୟ ସରକାରଙ୍କୁ ବିଶ୍ୱବ୍ୟାଙ୍କର ଦ୍ୱାରସ୍ଥ ହେବାକୁ ପଡ଼ିଥିଲା। ତଥାପି ପ୍ରାୟ ୧୦୦ କୋଟିରୁ ଊର୍ଦ୍ଧ୍ୱ ଟଙ୍କା ବିନିଯୋଗ ହୋଇ ପାରିନାହିଁ। ଇତିମଧ୍ୟରେ ବିଶ୍ୱବ୍ୟାଙ୍କର ଅନୁଧ୍ୟାନକାରୀ ଦଳ 'ଡିଟେଲ୍‌ଡ ଇଂପ୍ଲିମେଣ୍ଟେସନ୍ ରିଭ୍ୟୁ' ବା ଡିଆଇଆର୍ କରି ଯାହା ରିପୋର୍ଟ ଦେଇଛନ୍ତି ତା'ର ତାତ୍ପର୍ଯ୍ୟ ଏହି ଯେ ରିପୋର୍ଟ ପ୍ରକାଶ ପାଇବା ଦିନୁ ସରକାରଙ୍କ ନିଦ ହଜିଯାଇଛି।

ବିଶ୍ୱବ୍ୟାଙ୍କର ଏହି ସ୍ୱାସ୍ଥ୍ୟ ସେବା ବିକାଶ ପ୍ରକଳ୍ପରେ ଦୁର୍ନୀତିର ଗନ୍ଧ ଏବେ ନୁହେଁ ୨୦୦୨ରେ ବାରି ହୋଇ ପଡ଼ିଥିଲା ଏବଂ ସରକାର ଖୁବ୍ ତତ୍ପରତାର ସହିତ ପ୍ରକଳ୍ପ ଖର୍ଚ୍ଚର ଅଡିଟ୍ କରାଇଥିଲେ। ଅଡିଟ୍ ରିପୋର୍ଟରେ ଦୁର୍ନୀତି, ନିମ୍ନମାନର ନିର୍ମାଣ କାର୍ଯ୍ୟ, ଠିକାଦାରଙ୍କ ଅହେତୁକ ଅନୁକମ୍ପା ଆଦି ସଂପର୍କରେ ବହୁ ତଥ୍ୟ ଥିଲେ ସୁଦ୍ଧା କ'ଣ କାର୍ଯ୍ୟାନୁଷ୍ଠାନ କରାଯାଇଥିଲା ତାହା କେହି କହି ପାରିବେ





ନାହିଁ । ପରେ ସିଜିଏଙ୍କ ରିପୋର୍ଟରେ ମଧ୍ୟ ଅନିୟମିତତା ଆଦି ଦର୍ଶାଯାଇଥିଲା ।

ଏବେ ଡିଆଇଆର୍ ରିପୋର୍ଟ୍ରେ ଦୁର୍ନୀତି, ଖର୍ଚ୍ଚରେ ଅନିୟମିତତା, ଅର୍ଥ ହେରଫେର ଆଦିର ଅଭିଯୋଗ ପାଇବା ପରେ ହଠାତ୍ ତତ୍ପରତା ପ୍ରକାଶ ପାଇଲା । ମୁଖ୍ୟ ଶାସନ ସଚିବଙ୍କ ଅଧ୍ୟକ୍ଷତାରେ ଏକ ତିନିଜଣିଆ ଉଚ୍ଚ ସରକାରୀ ପଦାଧିକାରୀମାନଙ୍କ କମିଟି ନିଯୁକ୍ତ କରାଗଲ ତଥ୍ୟ ଅନୁସନ୍ଧାନ କରିବା ପାଇଁ । ପୁଣି କ'ଣ ହେଲା କେଜାଣି ଡିଆଇଆର୍ ରିପୋର୍ଟ ଅଧ୍ୟୟନ କଲାପରେ ଏହି କମିଟି ତଥ୍ୟସନ୍ଧାନ ଦାୟିତ୍ୱ ନେବାକୁ ରାଜି ହେଲେ ନାହିଁ । ଭିଜିଲାନ୍ସ ବିଭାଗକୁ ତଦନ୍ତଭାର ଦେବାକୁ ମୁଖ୍ୟ ଶାସନ ସଚିବ କୁଆଡେ ପରାମର୍ଶ ଦେଲେ । ମୁଖ୍ୟମନ୍ତ୍ରୀ ଏଥିରେ ରାଜି ହୋଇ ଭିଜିଲାନ୍ସ ବିଭାଗକୁ ତଦନ୍ତ ନିର୍ଦ୍ଦେଶ ଦେଇଛନ୍ତି ।

ଏତିକିବେଳେ ରିପୋର୍ଟରେ ଥିବା ଗୋଟିକ ପରେ ଗୋଟିଏ ନୂଆ ତଥ୍ୟ ପ୍ରକାଶ ପାଇବାରେ ଲାଗିଲା । ସବୁଠାରୁ ଅଧିକ ଚାଞ୍ଚଲ୍ୟକର ହୋଇଥିଲା ୨୫ ଲକ୍ଷ ଟଙ୍କାର ବିଲ୍ ମଞ୍ଜୁର କରିବାପାଇଁ ଜନୈକ ସ୍ୱାସ୍ଥ୍ୟ ମନ୍ତ୍ରୀ ୫ ଲକ୍ଷ ଟଙ୍କା ଲାଞ୍ଚ ନେଇଥିବା ଅଭିଯୋଗ । କେତେଜଣ ମୁଖ୍ୟ ଜିଲ୍ଲା ସ୍ୱାସ୍ଥ୍ୟାଧିକାରୀ ମଧ୍ୟ ଏଥିରେ ସଂପୃକ୍ତ । ତଳସ୍ତରର ବିଭାଗୀୟ କର୍ମଚାରୀ ମାନେ ପ୍ରକଳ୍ପରେ ଦୁର୍ନୀତି ଚାଲିଥିବାର ଜାଣିଥିଲେ ସୁଦ୍ଧା ଚାକିରୀ ଭୟରେ କିଛି ପ୍ରକାଶ କରୁନଥିବାର କୁହାଗଲା । ବିଶ୍ୱବ୍ୟାଙ୍କର ଅନୁଧ୍ୟାନକାରୀ ଦଳରେ ଥିବା ଓଡିଶାର ସଚି ଶତପଥୀ ଉପରୋକ୍ତ ତଥ୍ୟ ଦେଇ ଗୋଟିଏ ଘରୋଇ ଟେଲିଭିଜନ ସଂସ୍ଥାକୁ କହିଥିଲେ ଯାହାକି ଏହି ସଂସ୍ଥା ପ୍ରଚାର କରିଥିଲା । ୧୯୯୮ରୁ ୨୦୦୬ ପର୍ଯ୍ୟନ୍ତ ୬/୭ଜଣ ମନ୍ତ୍ରୀ ବିଭିନ୍ନ ସମୟରେ ସ୍ୱାସ୍ଥ୍ୟ ବିଭାଗ ଦାୟିତ୍ୱରେ ଥିଲେ । ତେବେ ଏ ସ୍ୱାସ୍ଥ୍ୟମନ୍ତ୍ରୀ ଜଣକ କିଏ ତାହା ହିଁ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ପାଲଟି ଯାଇଥିଲା । ବେଶ୍ କେତେଜଣ ସନ୍ଦେହ ଘେରରେ ଆସି ଯାଇଥିଲେ । କେହି କେହି ପୂର୍ବତନ ସ୍ୱାସ୍ଥ୍ୟ ମନ୍ତ୍ରୀ ସ୍ପଷ୍ଟୀକରଣ ଦେଇ ଦୋଷ ଛଡାଇଥିଲେ । ସଚି ଶତପଥୀ କେବଳ ଏତିକି କହିଥିଲେ ଯେ ବର୍ତ୍ତମାନର ଅର୍ଥମନ୍ତ୍ରୀ ପ୍ରଫୁଲ୍ଲ ଘଡେଇ ସ୍ୱାସ୍ଥ୍ୟମନ୍ତ୍ରୀ ଥିବା ସମୟରେ ପ୍ରକଳ୍ପଭୁକ୍ତ ବଡ ବଡ ନିର୍ମାଣ କାର୍ଯ୍ୟମାନ କରାଯାଇଥିଲା । ସେ ସିଧାସଳଖ ପ୍ରଫୁଲ୍ଲ ବାବୁଙ୍କ ବିରୋଧରେ ଦୁର୍ନୀତି ଅଭିଯୋଗ ଆଣିନଥିଲେ ମଧ୍ୟ ପ୍ରଫୁଲ୍ଲ ବାବୁ ସନ୍ଦେହର ଘେର ମଧ୍ୟକୁ ଆସି ଯାଇଥିଲେ । ଅବଶ୍ୟ ପ୍ରଫୁଲ୍ଲ ବାବୁ ତାଙ୍କର ସଂପୃକ୍ତିକୁ ଦୃଢଭାବରେ ଖଣ୍ଡନ କରିଛନ୍ତି । କିନ୍ତୁ ସେ ନିଜକୁ ଚର୍ଚ୍ଚାରୁ ଦୁରରେ ରଖିପାରି ନଥିଲେ ।

ଘଟଣାଟି ଆଉ ଏକ ନାଟକୀୟ ମୋଡ ନେଲା ଯେତେବେଳେ ମୁଖ୍ୟ ଶାସନ ସଚିବ ଅଜିତ ତ୍ରିପାଠୀ ବିଶ୍ୱବ୍ୟାଙ୍କ ପ୍ରତିନିଧିମାନଙ୍କ ସହିତ ଆଲୋଚନା କରି ଏହି କାରବାର ୨୦୦୫ ଜୁଲାଇ ମାସର ବୋଲି ଉଲ୍ଲେଖ କରିବା ସହିତ ସେତେବେଳେ ବିଜୟଶ୍ରୀ ରାଉତରାୟ ସ୍ୱାସ୍ଥ୍ୟମନ୍ତ୍ରୀ ଥିଲେ ବୋଲି ସାମ୍ବାଦିକ ମାନଙ୍କୁ କହିଥିଲେ । ବିଜୟଶ୍ରୀ ତାଙ୍କ ତୀବ୍ର ପ୍ରତିକ୍ରିୟାରେ ଅନ୍ୟ କାହାକୁ ଘଣ୍ଟ ଘୋଡାଇବାକୁ ତାଙ୍କୁ ବଳିର ବକରା କରାଯାଇ ଥିବା ଅଭିଯୋଗ କଲେ ।

ପ୍ରକାଶିତ ଅନ୍ୟାନ୍ୟ ତଥ୍ୟରୁ ଜଣାଯାଇଛି ଯେ ବିଶ୍ୱବ୍ୟାଙ୍କ ସହାୟତାରେ ଡାକ୍ତରଖାନା ଗୁଡିକ ପାଇଁ କିଣା ଯାଇଥିବା କେତେକ ଯନ୍ତ୍ରପାତି ରୋଗୀଙ୍କ ପାଇଁ ବିପଦ ସଙ୍କୁଳ ହେବ । ଏହି ଯନ୍ତ୍ରପାତିଗୁଡିକର ମାନ ଏତେ ନିମ୍ନ ଯେ ଚିକିତ୍ସା କାଳରେ ସେଥିରେ ବିସ୍ଫୋରଣ ଘଟିପାରେ ଏବଂ ଛୋଟ ଛୋଟ ପିଲାମାନଙ୍କୁ ବିଦ୍ୟୁତ୍ ସକ୍ ଲାଗିବାର ମଧ୍ୟ ଆଶଙ୍କା ରହିଛି । ଏହି ଯନ୍ତ୍ରପାତି ମଧ୍ୟରେ ଅଛି 'ହଟ୍ ଷ୍ଟିମ୍ ସର୍ଜିକାଲ୍ ଷ୍ଟେରିଲାଇଜର' । ଏପରି କେତେକ ସଂସ୍ଥାଠାରୁ



ଆହ୍ୱାନ
ଓଡିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

ତାହା କିଣାଯାଇଛି ଯେଉଁମାନେ ଗୁଣବତ୍ତାର ଆବଶ୍ୟକ ବୈଷୟିକ ସାର୍ଟିଫିକେଟ୍ ଦେଇନାହାନ୍ତି କିମ୍ବା ପ୍ରତାରଣାପୂର୍ଣ୍ଣ ସାର୍ଟିଫିକେଟ୍ ଦେଇଛନ୍ତି । ସେହିପରି ଏଡ୍ସ ନିୟନ୍ତ୍ରଣ କାର୍ଯ୍ୟକ୍ରମରେ ୫୧ଟି କାର୍ଯ୍ୟକ୍ରମ ମଧ୍ୟରୁ ୨୮ଟି ସମୀକ୍ଷା କରି ଡିଆଇଆର୍ ରିପୋର୍ଟରେ ଦର୍ଶାଇଛନ୍ତି ଯେ ଏଥିପାଇଁ ଯନ୍ତ୍ରପାତି କିଣାଯିବା ସଂପର୍କରେ ସରକାରୀ କାଗଜପତ୍ର ନାହିଁ। କୋଟେସନ୍, ଇଭାଲ୍ୟୁଏସନ୍ କାଗଜପତ୍ର କିମ୍ବା ତୁଳନାତ୍ମକ କୋଟେସନ୍ ସଂକ୍ରାନ୍ତ କାଗଜପତ୍ର ନାହିଁ। ଏହିସବୁ ଠିକାର ମୋଟ ମୂଲ୍ୟ ପ୍ରାୟ ୯୦ ଲକ୍ଷ ଟଙ୍କା ହେବ। ପୁଣି ପ୍ରକାଶ ପାଇଲା ୧୦୦ କୋଟିରୁ ଉର୍ଦ୍ଧ୍ୱ ଟଙ୍କାର ହିସାବ ମିଳୁନାହିଁ।

ବିଶ୍ୱବ୍ୟାଙ୍କ ଭଳି ଆନ୍ତର୍ଜାତିକ ସଂସ୍ଥାର ସହାୟତାରେ ହାତକୁ ନିଆଯାଇଥିବା କାର୍ଯ୍ୟକ୍ରମରେ ଏପରି ଦୁର୍ନୀତି ଓ ହେରଫେରର ଅଭିଯୋଗ ପ୍ରକାଶ ପାଇଲେ ଦେଶରେ ଓ ଏ ଦେଶ ବାହାରେ ରାଜ୍ୟର ସମ୍ମାନ କେଉଁ ସ୍ତରକୁ ଖସିଯିବ ତାହା ସହଜରେ ଅନୁମେୟ। ସେଇଥି ପାଇଁ କେନ୍ଦ୍ର ସରକାର ବିଶ୍ୱବ୍ୟାଙ୍କର ଡିଆଇଆର୍ ରିପୋର୍ଟରେ ଉଦ୍‌ବେଗ ପ୍ରକାଶ କରି ରାଜ୍ୟ ସରକାରଙ୍କୁ ଏ ସଂପର୍କରେ ସବିଶେଷ ତଦନ୍ତପାଇଁ ନିର୍ଦ୍ଦେଶ ଦେଇଛନ୍ତି। ଆମ ରାଜ୍ୟରେ ମଙ୍ଗୁଆଳମାନେ ଓ ସେମାନଙ୍କ ସମର୍ଥକ ବୃନ୍ଦ ବରାବର ଦାବି କରନ୍ତି ଯେ ସ୍ୱଚ୍ଛ ଶାସନ ଚାଲିଛି। କେବଳ ବିଶ୍ୱବ୍ୟାଙ୍କ ଅର୍ଥ ନୁହେଁ ଅନ୍ୟାନ୍ୟ ଯୋଜନାମାନଙ୍କରେ ଯେପରି ଅବାଧରେ ଦୁର୍ନୀତି ଚାଲିଛି ତାହା କ'ଣ ସ୍ୱଚ୍ଛ ଶାସନର ନିଦର୍ଶନ? ଶାସନ ମୁଖ୍ୟଙ୍କ ସ୍ୱଚ୍ଛ ଭାବମୂର୍ତ୍ତି ଯଦି ଶାସନ କଳରେ ପ୍ରତିଫଳିତ ନ ହେବ ତେବେ ସେ ଭାବମୂର୍ତ୍ତି ଅର୍ଥହୀନ ବୋଲି ମନେ ହେବ ନାହିଁ କି? ଆଉ କେତେ ହେରଫେର ଓ ଚଳୁ କଳାପରେ ଚୈତନ୍ୟୋଦୟ ହେବ? ଏକ ପକ୍ଷରେ ଚଳୁ ଚାଲୁଥିବ, ଅନ୍ୟପକ୍ଷରେ ତଦନ୍ତ ବି ଚାଲିଥିବ, ଏ ପ୍ରକାର ବିଡମ୍ବନାର ଅନ୍ତ କେଉଁଠି?

ଗ୍ରାମୀଣ ନିଶ୍ଚିତ କର୍ମ ନିଯୁକ୍ତି ଯୋଜନାରେ ଅର୍ଥ ହେରଫେର ଓ ଜାଲିଆତି ସଂପର୍କରେ ବରାବର ଅଭିଯୋଗ ହୋଇ ଆସିଛି । ମାସେ ଦେଢ ମାସତଳେ ଦିଲ୍ଲୀ ବିଶ୍ୱବିଦ୍ୟାଳୟ ତରଫରୁ ହୋଇଥିବା ଏକ ସର୍ଭେରେ ପ୍ରକାଶ ପାଇଥିଲା ଯେ ଏହି ଯୋଜନାରେ ଗରିବ ଖଟିଖିଆଙ୍କ ଯେଉଁ ତାଲିକା ପ୍ରସ୍ତୁତ କରାଯାଇଛି (ମାଷ୍ଟରରୋଲ୍) ସେଥିରେ ୪୦ ପ୍ରତିଶତ ନାମ ଜାଲି। ହାତକୁ ନିଆଯାଇଥିବା ୪୫ ପ୍ରତିଶତ କାମ ପାଇଁ ଯାଞ୍ଚ କମିଟି ନାହିଁ। ଜବ୍‌କାର୍ଡରେ ମଜୁରିର ପରିମାଣ ପ୍ରାୟତଃ ଲେଖା ଯାଇନାହିଁ, ଇତ୍ୟାଦି ଇତ୍ୟାଦି। ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନାରେ ୫୦୦ କୋଟି ଟଙ୍କାର ହେରଫେର ହୋଇଛି ବୋଲି ଗୋଟିଏ ଏନ୍‌ଜିଓ (ବେସରକାରୀ ସଂସ୍ଥା)ର ରିପୋର୍ଟ ପ୍ରକାଶ ପାଇବା ପରେ ଅଡିଟର ଓ କଂପ୍ଟ୍ରୋଲର ଜେନେରାଲଙ୍କୁ (ସିଏଜି) ତା'ର ତଦନ୍ତ ଭାର ଦିଆଯାଇଥିଲା। ସିଏଜିଙ୍କର ନିକଟତର ପ୍ରକାଶିତ ମଧ୍ୟବର୍ତ୍ତୀକାଳୀନ ରିପୋର୍ଟରେ ଅନିୟମିତତା ଓ ଅର୍ଥ ହେରଫେରର କିଛି ନଜିର ମଧ୍ୟ ମିଳିଛି।

ଗତ ନଭେମ୍ବର ମାସରେ କେନ୍ଦ୍ର ସରକାରଙ୍କ ଗ୍ରାମୀଣ ନିଶ୍ଚିତ କର୍ମ ନିଯୁକ୍ତି ପରିଷଦର ସଦସ୍ୟ ତଥା ବିଶିଷ୍ଟ ଅର୍ଥନୀତିଜ୍ଞ ଅଧ୍ୟାପକ ଜିନ୍ ଡ୍ରେଜ୍ ଉଲ୍ଲେଖ କରିଥିଲେ ଯେ ଏହି ଯୋଜନାରେ ହେଉଥିବା ଖର୍ଚ୍ଚର ପ୍ରାୟ ୩୨ ପ୍ରତିଶତ ଭାଗ ସରକାରୀ କର୍ମଚାରୀ ଓ ଠିକାଦାରଙ୍କ ପକେଟକୁ ଯାଉଛି। ଓଡିଶାର ୩ଟି ଜିଲ୍ଲାରେ ୩୦ଟି କାର୍ଯ୍ୟ କେନ୍ଦ୍ର ପରିଦର୍ଶନ କରି ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଅନୁସନ୍ଧାନକାରୀ ଦଳ ଏହ ଜାଣି ପାରିଛନ୍ତି। ଅଧ୍ୟାପକ ଡ୍ରେଜ୍ ଆହୁରି ମଧ୍ୟ କହିଥିଲେ ଯେ ବିଭିନ୍ନ ସ୍ତରରେ ନିର୍ଦ୍ଦିଷ୍ଟ ପରିମାଣର ପର୍ସେଣ୍ଟେଜ୍ ପାଉଣା ବାବଦରେ ହେରଫେର ହେଉଥିବା

ତୃତୀୟ ବର୍ଷ, ପ୍ରଥମ ସଂଖ୍ୟା ଫେବୃଆରି, ୨୦୦୮

ନ୍ୟାସା ନବୋଦିତା ଉପସ୍ଥାପନ କରୁଛନ୍ତି

3rd Year, 1st Issue February, 2008



ଆହ୍ୱାନ

ଓଡିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

ଏହି ଅର୍ଥର ଏକ ସିଂହ ଭାଗ ଚାଲିଯାଇଛି । 'ପର୍ସେଣ୍ଟେଜ୍' ବ୍ୟବସ୍ଥାର ଫାଇଦା ପାଆନ୍ତି ବ୍ଲକ୍ ଉନ୍ନୟନ ଅଧିକାରୀ (୨ ପ୍ରତିଶତ), ଜୁନିୟର ଇଞ୍ଜିନିୟର (୫ ପ୍ରତିଶତ), ସହକାରୀ ଇଞ୍ଜିନିୟର (୩ ପ୍ରତିଶତ), ବ୍ଲକ୍ କର୍ମଚାରୀ (୧ ପ୍ରତିଶତ), ଗ୍ରାମସେବକ (୫ ପ୍ରତିଶତ), ଗ୍ରାମ ପଞ୍ଚାୟତ ସେକ୍ରେଟାରୀ (୩ ପ୍ରତିଶତ) ଏବଂ ଅନ୍ୟାନ୍ୟ (୩ ପ୍ରତିଶତ) ତା'ଛଡା ଠିକାଦାର ମାନେ ୧୦ ପ୍ରତିଶତ ଲାଭ କରିଥାନ୍ତି । ଗ୍ରାମୀଣ ନିଶ୍ଚିତ କର୍ମ ନିଯୁକ୍ତି ଯୋଜନାରେ ଘରୋଇ ଠିକାଦାରଙ୍କୁ କାମ ଦେବା ବାରଣ କରାଯାଇଥିଲେ ସୁଦ୍ଧା, ଅଧିକାଂଶ କ୍ଷେତ୍ରରେ ଘରୋଇ ଠିକାଦାର ମାନଙ୍କ ଜରିଆରେ କାମ କରାଯାଉଥିବା ଲକ୍ଷ୍ୟ କରାଯାଇଥିଲା ବୋଲି ଅଧ୍ୟାପକ ଡ୍ରେଜ୍ କହିଥିଲେ । ରାଜ୍ୟ ସରକାର ଯୋଜନାରେ ଅର୍ଥ ହେରଫେର ଅଭିଯୋଗକୁ ବାରମ୍ବାର ଖଣ୍ଡନ କରୁଥିଲେ ମଧ୍ୟ ଉପରୋକ୍ତ ତଥ୍ୟକୁ ଆଖିବୁଜି ଦେଇ ହେବ କି? ସମଗ୍ର ପରିସ୍ଥିତିକୁ ଅନୁଧ୍ୟାନ କଲେ ମନେ ହେବ ଯେ ସ୍ୱଚ୍ଛ ଶାସନ ତ ସ୍ୱପ୍ନରେ ପରିଣତ ହୋଇଛି, କେବଳ ଅତି ପରିଷ୍କାର ଭାବରେ ଶାସନ କଳ ଦୁର୍ନୀତି ପ୍ରବଣ ହୋଇ ପଡିଛି । ଦୁର୍ଭାଗ୍ୟଜନକ ହେଲେ ମଧ୍ୟ ତାହା ହିଁ ବାସ୍ତବ ସ୍ଥିତି ।



## ସାହିତ୍ୟ ପ୍ରୀତି

ତୃତୀୟ ନୟନ

ଗନ୍ତାୟତ ଶିବପ୍ରସାଦ

କେହି କେହି ଗଣିତ ନାମକ ବିଷୟଟିକୁ ପ୍ରାଣପଣେ ଭୟ କରିବାର ସିନା ଶୁଣାଯାଏ, ମୁଁ ଇସ୍କୁଲ୍‌ରେ ପଢିବା ସମୟରେ ଗଣିତ ସାଙ୍ଗକୁ ସାହିତ୍ୟ ସହ ମଧ୍ୟ ମୋର ସେମିତି କିଛି ବନ୍ଧୁତ୍ୱପୂର୍ଣ୍ଣ ସଂପର୍କ ନଥିଲା । ଆମ ଖଟିର ମିତ୍ରଜନେ ଭାବନ୍ତି ଯେ ମୁଁ ମନରୁ ଫାନ୍ଦି ନାନା କଥା ଲେଖାଲେଖି କରୁଥିବାରୁ ଇସ୍କୁଲ୍ ଆଉ କଲେଜରେ ସାହିତ୍ୟ ବିଷୟରେ ପ୍ରଥମ ହେବାର ରେକର୍ଡ ମୋର ରହିଥିବ । କିନ୍ତୁ ନା, ସାହିତ୍ୟରେ ଚଳିଯିବା ଭଳି ନମ୍ବର ଠଉଁ ଅଧିକ ରଖିବା ମୋ ପାଇଁ ଖାଲି ପାଦରେ ଏସ୍କିମୋଙ୍କ ଅଞ୍ଚଳକୁ ଯିବା ଭଳି ଅସାଧ୍ୟ ହୋଇ ପଡୁଥିଲା ।

ପଢିଲେ ପଢିଲେ 'ତୁମ ପରି ପିଲାଟିଏ', 'ଏଇ ଆମରି ଘର' ସ୍ତରରେ ସାହିତ୍ୟ ପାଠ ଥିବା ସମୟରେ କୌଣସି ମତେ କାମ ଚଳିଯାଉଥିଲା । କିନ୍ତୁ ଅପେକ୍ଷାକୃତ ଅଧିକ ସ୍ତରକୁ ଯାଆନ୍ତେ ସାହିତ୍ୟ ମୋ ପାଇଁ ଅଧିକରୁ ଅଧିକ ଅବୁଝା ଓ ଜଟିଳ ହେବାରେ ଲାଗିଲା । ପୂର୍ବାପର ପ୍ରସଙ୍ଗ ସହ ଶଂସିତ ପଦ୍ୟାଂଶ ବା ଗଦ୍ୟାଂଶଟିର ସରଳାର୍ଥ ଲେଖ'-ଏ ନିର୍ଦ୍ଦେଶଟିକୁ ଦେଖିବା ମାତ୍ରେ ମୋ ଛାତି ଭିତରେ ସତେ ଅବା ଭୂକଂପ ସୁରୁ ହୋଇଯାଉଥିଲା । ଶଂସିତ ପଦ୍ୟାଂଶ ବା ଗଦ୍ୟାଂଶ କୋଉ ପାଠରୁ ଆସିଛି, ତାହା ମନେ ପକାଇ ପକାଇ ଆଣିବାକୁ ଡେର ସମୟ ଲାଗି ଯାଉଥିଲା । ଦୁଜେ, ତା'ର ପୂର୍ବ ଓ ପର ପ୍ରସଙ୍ଗ ପାକୁଳି କରି କରି ସେ ସବୁ ପରୀକ୍ଷା ଖାତାରେ ଲେଖୁ ଲେଖୁ ଘଣ୍ଟି ବାଜି ଯାଉଥିଲା । ସୁତରାଂ ଶଂସିତ ଅଂଶଟିର ସରଳାର୍ଥ ସବୁ ଲେଖିବା ମୋ ପାଇଁ ଜଟିଳ ବ୍ୟାପାର ହୋଇ ପଡୁଥିଲା ।

ତୃତୀୟ ବର୍ଷ, ପ୍ରଥମ ସଂଖ୍ୟା ଫେବୃଆରି, ୨୦୦୮
ନ୍ୟାସା ନବୋଦିତା ଉପସ୍ଥାପନ କରୁଛନ୍ତି
3rd Year, 1st Issue February, 2008



ଆହ୍ୱାନ
ଓଡିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

ସେହିପରି ରଚନା ଲେଖିବା ବେଳେ ହାତ ଥରିବା, ମୁଣ୍ଡ ବୁଲାଇବା, ଏକ ମାଡିବା, ଭୋକ ଲାଗିବା ଭଳି ଯାବତୀୟ ବିକୃତି ଗୋଟାଏ ପରେ ଗୋଟାଏ ଆତ୍ମ ପ୍ରକାଶ କରୁଥିଲେ। 'ଗାଈର ଆତ୍ମକାହାଣୀ', 'ରଥଯାତ୍ରା' ବିଷୟରେ ରଚନା ଲେଖିବା ଯାଏଁ କଥା ଠିକ୍ ଥିଲା। କିନ୍ତୁ ରଚନାର ବିଷୟବସ୍ତୁ ଯେତେବେଳେ ବଡି ବଡ଼ି 'ଜାତୀୟ ସଂହତି', 'ଆନ୍ତର୍ଜାତିକ କ୍ରୀଡାରେ ଭାରତର ସ୍ଥାନ', 'ଛାତ୍ର ରାଜନୀତି', 'ଗଣତନ୍ତ୍ରରେ ନିର୍ବାଚନର ଭୂମିକା' ଭଳି ଅପହଞ୍ଚ ଚିଡିଆ ପର୍ଯ୍ୟନ୍ତ ଗଲା। ସେତେବେଳେ ରଚନା ମୋ ପାଇଁ ଅଧିକରୁ ଅଧିକ ଆତଙ୍କପ୍ରଦ ହେବାରେ ଲାଗିଲା। ସାହିତ୍ୟ ସାର୍‌ଙ୍କୁ ଯେତେ କଷ୍ଟ କରି ରଚନା ଲେଖି ଦେଖାଇଲେ ବି ସେ ମୋତେ ସନ୍ତୁଷ୍ଟ ନ ହୋଇ ସାରା ରଚନାରେ ଏଠି ସେଠି ନାଲି ଛକି ପକାଇ ଦେଉଥିଲେ।

ଅପର ପକ୍ଷରେ ମୋର ବାଲ୍ୟବନ୍ଧୁ ଟଙ୍କଧର ସବୁବେଳେ ସାହିତ୍ୟରେ ଆଖି ଦୃଶିଆ ନମ୍ବର ରଖୁଥିଲା। ସାହିତ୍ୟ କ୍ଲାସ୍ ଚାଲିଥିବା ସମୟରେ ସେ ମନଧ୍ୟାନ ଦେଇ ଶିକ୍ଷକଙ୍କ ପଡାଶୁଣି ଖାତାରେ କଣ ସବୁ ଟିପି ପକାଉଥିଲା। ସାର୍ ତା'ର ଉଦାହରଣ ଦେଇ ମୋ ଭଳି ସାହିତ୍ୟରେ ଦୁର୍ବଳ ପିଲାଙ୍କୁ ଟଙ୍କଧର ଠଉଁ ପାଠ ଶିଖିବା ପାଇଁ ଛିଗୁଲେଇ କହୁଥିଲେ। ଏପରିକି ଜନୈକ ସାହିତ୍ୟ ସାର୍ ଟଙ୍କଧରର ପ୍ରଗାଢ ସାହିତ୍ୟ ପ୍ରୀତି ଦେଖି ଭବିଷ୍ୟବାଣୀ କରିଥିଲେ କି, ଦିନେ ସେ ଓଡିଆ ଭାଷାର ଜଣେ ନାମକରା ଲେଖକ ହେବ। ଏଥିରେ ଟଙ୍କଧର ଉତ୍ସାହିତ ହୋଇପଡି ଗୋଟେ ଦି'ଟା କଂଚା କବିତା ଲେଖିବାର ଅପଚେଷ୍ଟା କରିଥିବା କଥା ମୁଁ ଜାଣେ।

ଅଥଚ ବିଧିର ବିଡମ୍ବନା ଦେଖ, ସାହିତ୍ୟରେ ସର୍ବୋଚ୍ଚ ନମ୍ବର ରଖୁଥିବା ଟଙ୍କଧର ଏଇନେ ଆମ ସହରର ଜଣେ ବିଖ୍ୟାଟ ଠିକାଦାର ବନି ଇଟା, ଗୋଡି, ସିମେଣ୍ଟ ଓ ବାଲିର ଭାଗମାପର ଚକ୍କରରେ ସୁନ୍ଦରୀ ପତ୍ନୀ, ବିଦେଶୀ କୁକୁର, ବିରାଟ ହର୍ମ୍ୟ ଫାର୍ମ୍ ହାଉସ୍, ଏସି କାର୍, ମୋଟା ବ୍ୟାଙ୍କ୍ ବାଲାନ୍‌ସ ଓ ହିସାବହୀନ ଦାମୀ ଅଳଙ୍କାରାଦିର ଅଧୀଶ୍ୱର ହୋଇସାରିଛି। ଓଡିଆ ସାହିତ୍ୟ ଭଳି ଦୁର୍ବଳ/ଅସହାୟ ଚିଡିଆ ଠଉଁ ସେ କାଇଁ କେତେ କୋଶ ଦୂରରେ।

ଏପଟେ ଛାତ୍ରାବସ୍ଥାରେ ସାହିତ୍ୟଠାରୁ ସବୁବେଳେ ନିରାପଦ ଦୂରତାରେ ରହିବାକୁ ପସନ୍ଦ କରୁଥିବା ମୋ ଭଳି ଅଧମ ଘଟଣା ଚକ୍ରରେ ପଡି ଏବେ ସାହିତ୍ୟର ସେବକ ପାଲଟିଛି ସ୍ୱେଚ୍ଛାରେ। ଏହାଠାରୁ ବଳି ଅଜବ କଥା ଆଉ କ'ଣ ଥାଇପାରେ। ହାୟ, ହାୟ, ଏବେ ଲେଖିବସିଲେ ଛାଏଁ ଛାଏଁ ଏତେ ଶବ୍ଦ, ଏତେ ଭାବନା, ଏତେ କଳ୍ପନା, ଏତେ ବିମ୍ବ, ଏତେ ଘୋଡାଡିମ୍ବ କୋଉଠୁ ଉଡି ଆସି ମୋ ବଲ୍‌ପେନ୍ ମୁନରେ ପଶି ଯାଉଛନ୍ତି କେଜାଣି। ସେତେବେଳେ ଯଦି ଏ ସବୁର କାଣିଚାଏ ବି ଢୁକିଥାନ୍ତା, ତା'ହେଲେ ଏତେ ହଲାପଟା ହେବାକୁ ପଡିନଥାନ୍ତା। ସାହିତ୍ୟ ବିଷୟରେ ସର୍ବନିମ୍ନ ନମ୍ବର ରହିବା ଯୋଗୁଁ ପ୍ରଥମ ଶ୍ରେଣୀ ଟିକକରେ ହାତଛଡା ହୋଇ ଯାଉଥିଲା। ସେଥିଯୋଗୁଁ ଏବେ ଅଧସ୍ତନ କିରାଣୀ ଭାବରେ ହୀନିମାନିଆ ଜୀବନ ବିତାଇବାକୁ ପଡୁଛି।

ଶୁଣିବାକୁ ପାଉଁ, ଆମର ଭାଷାବିତ୍ ଓ ସାହିତ୍ୟ ପ୍ରେମୀଗଣ ଓଡିଆ ବିଷୟରେ ବେଶି ପିଲା ଫେଲ୍ ହେଉଥିବା ଯୋଗୁଁ ଓ ଲୋକଙ୍କ ସାହିତ୍ୟ ପ୍ରୀତି କମି ଯାଉଥିବାରୁ ଛାତିରେ ହାତ ବାଡେଇ ବାହୁନୁଛନ୍ତି । ଅବଧାନଗଣ, ଓଡିଆ ସାହିତ୍ୟରେ ପଛୁଆ ପିଲାଙ୍କ ପାଇଁ ବିବ୍ରତ ହୁଅନ୍ତୁ ନାହିଁ। ସେମାନଙ୍କ ମଧ୍ୟରୁ କେତେଜଣ ମୋ ପରି ଲେଖାଲେଖିରେ ମାତିଥିବା ଜୀବ ବି ଉପୁଜି ପାରନ୍ତି, ଏଇ ଆଶା ରଖନ୍ତୁ। ସାହିତ୍ୟରେ ବେଶି ନମ୍ବର ରଖିଥିବା ଟଙ୍କଧର ମାନଙ୍କୁ ନେଇ ଓଡିଆ ସାହିତ୍ୟର କ'ଣଟା ଆଲୁଅ ହୋଇଯିବ ଯେ।

ଆହ୍ୱାନ
ଓଡିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା



'ସୁହାସିତମ୍', କସ୍ତୁରୀ ନଗର, ଏଲ୍ ଆଇ ସି ପଛ, ରାୟଗଡା, ୭୬୫୦୦୧

# ଆମ ଗାଁ ହାଲ୍‌ଚାଲ

ଥାନା ଆଗରେ ଆଜି ବହୁତ ଭିଡ । ସକାଳୁ ସକାଳୁ ଏଇ ଖବର ପ୍ରଚାର ହେବାପରେ ମାଛବଜାରଠାରୁ ବି ଅଧିକ ଭିଡ ଆଜି ଥାନା ଆଗରେ ହେଇଚି । ମାଷ୍ଟ୍ରେ ଆଜ୍ଞା ଭିଡ ଭିତରୁ ବାହାରି ଆସିଲେ । ଘଣ୍ଟା ଦେଖି ସାଇକେଲ୍ ଚଳାଇଲେ ଘର ଆଡକୁ । ବାଟରେ କାର୍ଜି ଦେଖି କହିଲେ, 'କଣ ହେଇଚି? ସବୁ ଧାଉଁଚନ୍ତି?' କରଣେ କହିଲେ, 'ଭାଇନା, ସବୁ କଳିକାଳ କଥା । ଏଠି କେହି ବି ସୁରକ୍ଷିତ ନାହାନ୍ତି । ହଇ ହେ, ଯଦି ଥାନାରେ ଏମିତି ସବୁ ଘଟଣା ହେବ, ଆମେ ଆଉ କାହା ଉପରେ ବିଶ୍ୱାସ କରିବା । ଆମକୁ ସୁରକ୍ଷା ଦେବ କିଏ?' କାର୍ଜି କହିଲେ, 'ହଉ, ତୁମ ଯାଅ, ସ୍କୁଲ୍ ଖୋଲିବ । ମୁଁ ଯାଉଛି, ଥାନା ଆଡେ ବୁଲି ଆସିବି ।'

ସକାଳ ଦଶଟା ପାଖାପାଖି ହେବ, ଥାନା ଆଗରୁ ଭିଡ କମିବା ନାମ ଧରୁନି । ପୁଲିସ ବାବୁ ସିଂହ ଭଳିଆ ରଡି ଛାଡୁଛନ୍ତି, ହେଲେ କେହି ବି ଥାନା ଆଗରୁ ଘୁଞ୍ଚିବାର ନାଁ ଧରୁ ନାହାନ୍ତି । ସେଇଠୁ ଘଟଣା କଣ ଜାଣିବା ପାଇଁ ସହରୀ ପ୍ରଜାପତିଆ (ସାମ୍ବାଦିକ) ଦଳେ ଗାଡି ଛୁଟେଇ ଆସି ପହଞ୍ଚିଗଲେ । କଥାଟା ପ୍ରଘଟ ହେବାର ତିନି ଘଣ୍ଟାରୁ ଅଧିକ ସମୟ ହେଲାଣି । କେହି ବି କିଛି କହୁନାହାନ୍ତି । ସମସ୍ତେ ଜାଣିଛନ୍ତି, ଥାନା ବାବୁ ଭାରି ପ୍ରଖର, ରାଗିଗଲେ, ହାଡମାଂସ ସବୁ ଏକ ହୋଇଯିବ । ହେଲେ ସାମ୍ବାଦିକଙ୍କୁ ଭୟ ନାହିଁ । ଆଗକୁ ଠେଲିପେଲି ଦୈନିକ ସମ୍ବାଦପତ୍ର 'କୁହାକୁହି'ର ସାମ୍ବାଦିକ ଅନାଦି ବାବୁ ହାତରେ ମାଇକ୍ ଧରି ପୁଛାକଲେ, 'ଏଇ ଘଟଣା ହେଲା କେତେବେଳେ?' ଥାନାବାବୁ ନିର୍ବାକ୍ ଥାନା ଭିତରକୁ ପଶିଗଲେ । କନେଷ୍ଟବଳ ରାଧା ସ୍ୱାଇଁ ବାହାରେ ଠେଙ୍ଗାଧରି ଠିଆ ହୋଇଥିଲା । ତା'କୁ ପଚାରିବା ପରେ ସେ ପୁଲିସିଆ ଅନ୍ଦାଜରେ ଉତ୍ତର ଦେବା ଆରମ୍ଭ କଲା ।

'ଆଜ୍ଞା, ଆମକୁ ଲାଗୁଛି, ରାତି ଦୁଇଟାରୁ ତିନିଟା ମଝିରେ ଏଇ କାଣ୍ଡ କାରଖାନା ହେଇଚି । ଠିକ୍ ସେଇ ସମୟରେ ଆମର ଡ୍ୟୁଟି ବଦଳ ହୁଏ । ବୋଧହୁଏ ସେଇ ସମୟରେ ଏୟା ହେଲା । ଆଉ ରାତିରେ ଯୋଉ ଶୀତ, ସେଥିରେ ଟିକେ ଚା' ପିଇବା ପାଇଁ ହାସପାତାଳ ପାଖ ଅ'ନ୍ତା ଚା' ଦୋକାନକୁ ଆମେ ସବୁ ଯାଇଥିଲୁ, ସେଇ ସମୟରେ ହେଇଥିବ ।' ଅନାଦି ବାବୁ ପଚାରିଲେ, 'କଣ ସବୁ ନୁକସାନ୍ ହେଇଚି?' ସ୍ୱାଇଁବାବୁ କହିଲେ, 'କ'ଣ ଆଉ ନେଇଥାଆନ୍ତା, ଥାନାରେ କ'ଣ ଥାଉଚି ଯେ? ହଁ ବଡବାବୁଙ୍କ ମୋବାଇଲ୍ ଫୋନ୍‌ଟା ନେଇଯାଇଚି । ଆଉ ସେ ପାଖ ରୁମ୍‌ରେ ବାବୁଙ୍କ ଲୁଗା ଆଟାଚିଟା ଥିଲା, ତା'କୁ ବି ସାଫ୍ କରିଦେଇଚି । ବାବୁ କହୁଥିଲେ କାଲେ ସେଥିରେ ପାଞ୍ଚହଜାର ଟଙ୍କା ବି ଥିଲା, ସେ ବି ଯାଇଚି ।' ପଛରେ ଠିଆ ହୋଇ ଏଇ କଥା ଶୁଣି କାର୍ଜି ଚମକି ପଡିଲେ, 'ଥାନାରେ ଚୋରୀ?' ସେ ଭାବିଥିଲେ, ହାଜତ ଭିତରେ କିଏ ମରିଯାଇଚି ବୋଲି, ହେଲେ ଅସଲ କଥାଟା ଏତେ ମାରାତ୍ମକ ସେ ଭାବି ନଥିଲେ । ଏଇ ଖଣ୍ଡମଣ୍ଡଳରେ ମାତ୍ର ଗୋଟିଏ ଥାନା ଥିଲା, ଆଉ ବିଗତ ଦଶବର୍ଷ ହେଲା ଥାନାବାବୁଙ୍କ ଦୌରାତ୍ମ୍ୟ ବିଷୟରେ ଜଣାଶୁଣା କୌଣସି ଛୋଟ ବା ବଡ ଚୋର ଏଇ ଅଞ୍ଚଳରେ ହାତ ସଫାକରିବା ଶୁଣା ଯାଇନଥିଲା ।

ସାମ୍ବାଦିକ ମାନଙ୍କ ସବୁ ପ୍ରଶ୍ନର ଉତ୍ତର ଦେଉଥିବା ସମୟରେ ଭିତରୁ ଡକା ହୋଇ ସ୍ୱାଇଁ ବାବୁ ଚାଲିଗଲେ, ଏହାପରେ କେତେ ଡକାକଲେ ବି ଥାନା ଭିତରୁ ଆଉ କେହି ବାହରକୁ ଆସିଲେ ନାହିଁ । ସମସ୍ତଙ୍କ ମନରେ ସ୍ୱତଃ ପ୍ରଶ୍ନ

ତୃତୀୟ ବର୍ଷ, ପ୍ରଥମ ସଂଖ୍ୟା ଫେବୃଆରି, ୨୦୦୮
3rd Year, 1st Issue February, 2008








ଉଙ୍କିମାରୁଥିଲା, ଆମ ଘରେ ଚୋର ପଶିଲେ ଥାନାକୁ ଯିବା, ହେଲେ ଥାନାରେ ଚୋରୀ ହେଲେ, ସିଏ ଯିବେ କୁଆଡେ? କାର୍ଜି କହିଲେ, ରାଜଧାନୀରୁ ବଡ ପୁଲିସ ଆସିବେ, ଆଉ ତଦନ୍ତ କରିବେ। ଅଗତ୍ୟା ସକାଳ ଏଗାରଟା ବାଜୁ ବାଜୁ ଥାନାରେ ଚୋରୀ ହୋଇଥିବା ଖବର ରାଜ୍ୟର ସମସ୍ତ ଟିଭି ଚ୍ୟାନେଲ୍‌ରେ ପ୍ରସାରିତ ହୋଇ ସାରିଥିଲା। ଏହା ଦେଖି ଜଣେ ଅନୁଗତ ଗୃହସଚିବଙ୍କ କାନରେ ଖବର ପକାଇ କହିଲେ, 'ସାର୍, ଏବେ ଆମେ କ'ଣ କରିବା?' ସଚିବ ମୁଣ୍ଡ ଆଉଁସି ଆଉଁସି କହିଲେ, 'ଆଗ ସେ ଥାନାକୁ ଫୋନ୍ ଲଗାଅ। ସେ ଅଫିସର କିଏ ଅଛି ଡ୍ୟୁଟିରେ ତା' ସହ କଥା କରାଅ।' ସଚିବଙ୍କ ଫୋନ୍‌ରୁ ଦୁଇ ଆଇ ତିନି ଅକ୍ଷର ସମେତ ଆହୁରି ଅନେକ ଗାଳି ସବୁ ଶୁଣି ଥାନାବାବୁଙ୍କ ଚେତା ପଳାଇଲା। ପାଖାପାଖି ପଚାଶ ଖଣ୍ଡ ଗାଁରେ ଖୁବ୍ ନାଁ କରିଥିବା ଥାନାବାବୁ ଆଜି ନିରିହ ଶିଶୁଟିଏ ପରି ସଚିବଙ୍କ ପାଖରୁ ଗାଳି ଶୁଣିଲେ।

ସଚିବ ଚିନ୍ତାରେ ପଡିଥିବା ସମୟରେ ମନ୍ତ୍ରୀଙ୍କ ଫୋନ୍ ଆସିଲା। ଚଡାଗଳାରେ ମନ୍ତ୍ରୀ କହିଲେ, 'ଇଏ ସବୁ କଣ ଚାଲିଛି। ତୁମେ ଆମ ରାଜୁତି ସାରିବାକୁ ବସିଲଣି, ଅଥଚ ଆମକୁ କାନରେ ଖବର ନାହିଁ। କ'ଣ ଘଟଣା ହେଇଛି, ତା'ର ରିପୋର୍ଟ ଅଧଘଣ୍ଟା ଭିତରେ ମୋତେ ଦିଅ।' ସଚିବଙ୍କ ମୁଣ୍ଡ ଘୁରାଇ ପକାଇଲା, ପୁଣିଥରେ ଥାନାକୁ ଫୋନ୍ କଲେ। ଏଥର ଧିରସ୍ୱରରେ ସବୁ କଥା ଶୁଣିଲେ। କହିଲେ, 'ଯାହା ବି ହେଉ ଅଧଘଣ୍ଟା ଭିତରେ ରିପୋର୍ଟ ଦିଅ, ନହେଲେ ତୁମ ଚାକିରି ଗୋଲ୍।' ଥାନାବାବୁ କଣ କରିବେ କିଛି ଭାବିପାରିଲେ ନାହିଁ। ଏହି ସମୟରେ ଥାନାର ଖବରୀ ଦଣ୍ଡାସୀ ବାରିକ ଆସିଲା। ଖବରୀକୁ ଦେଖି ଥାନାବାବୁଙ୍କ ଆଖିରେ ଖୁସି ଦେଖାଗଲା। ଦଣ୍ଡାସୀ ବାରିକ ଆଜିପର୍ଯ୍ୟନ୍ତ କେବେ ବି ଭୁଲ୍ ଖବର ଆଣିନି। ଆଜି ଯଦି ସେ ଚୋରର ଠିକଣା ଆଣି ଦିଅନ୍ତା, ତେବେ ସବୁ ସମାଧାନ ହେଇଯାଆନ୍ତା।

ଦଣ୍ଡାସୀ ବାରିକର ହାତଧରି ଥାନାବାବୁ ଥାନା ପଛକୁ ନେଇଗଲେ, ତା'ହାତରେ ଶହେଟଙ୍କିଆ ଦୁଇଟା ନୋଟ୍ ଧରେଇ କହିଲେ, 'କହ କିଏ ଚୋରୀ କରିଛି?' ଏଇ ସବୁ ଘଟଣାକୁ ଅନଭିଜ୍ଞ ଦଣ୍ଡାସି ହଠାତ୍ କିଛି କହୁ ' କହୁ ଚୁପ୍ ହେଇଗଲା। କହିଲା, 'ଆଜ୍ଞା ଖବରଟା କିନ୍ତୁ ଜବର। ମାତ୍ର ଆଜ୍ଞା ବିପଦ।' ଥାନାବାବୁ ଅଭୟ ଦେଉ ଦେଉ ଆଉ ଦୁଇଟା ଶହେଟଙ୍କିଆ ଧରେଇ ଦେଇ କହିଲେ, 'କହ। ଚିନ୍ତା କରନା। ତୋତେ କେହି କିଛି କରିପାରିବେ ନାହିଁ।' ସକାଳୁ ସକାଳୁ ପୁଲିସିଆ ବାବୁ ହାତରୁ ଚାରିଶହ ଝଡେଇ ଦେଇ ଦଣ୍ଡାସିର ଖୁସି କହିଲେ ନ ସରେ, ହେଲେ ସେ କହିବ କଣ? କହୁ କହୁ କହି ପକାଇଲା, ଆଜ୍ଞା ଭିତର ଗାଁ ପାଖରେ ଯୋଉ ନାଳ ଯାଇଛି, ସେଇଠି ଗଣ୍ଡେ ଲୋକ ଥାନାକୁ ଚୋରୀ କରିବା କଥା ହେଉଥିଲେ। ଲୋକ କହୁଛନ୍ତି କାଳେ ସବୁ ନକ୍ସଲ ଥିଲେ।' ଦଣ୍ଡାସିର କଥା ନ ସରୁଣୁ ଥାନାବାବୁ କହିଲେ, 'ଥାଉ ବାକି ସବୁ କଥା ମୁଁ ବୁଝିଗଲି।' ସେ ତୁରନ୍ତ ରିପୋର୍ଟ ତିଆରିଲେ, ଆଉ ଅଧଘଣ୍ଟା ଭିତରେ ରାଜଧାନୀକୁ ଫାକ୍ସ କରିଦେଲେ। ଥାନାବାବୁଙ୍କ ଚିଠି ଦେଖି ସଚିବଙ୍କ ହୋସ୍ ଉଡିଗଲା। 'ଉଦୟପୁର ଥାନାରେ ନକ୍ସଲଙ୍କ ଆତଙ୍କରାଜ'। 'ନକ୍ସଲ୍' କହି ଚିଲ୍ଲେଇ ପକାଇଲେ ମନ୍ତ୍ରୀ। ନକ୍ସଲ କାହୁଁ ଅଇଲେ?'

ଦେଖୁ ଦେଖୁ ସବୁ ନ୍ୟୁଜ୍ ଚାନେଲ୍‌ରେ ନକ୍ସଲ ଆସିଥିବା ଖବର ପ୍ରଚାର ହେଇଗଲା। ଥାନାଭିତରେ ଗୋପନରେ ବସିଥିବା ବାବୁ ଏବେ ବୀରଦର୍ପରେ ବାହାରକୁ ଆସି ସେମାନେ କିପରି ନକ୍ସଲଙ୍କୁ ସାମନା କଲେ ସେ କଥା ସମସ୍ତଙ୍କୁ କହିବାକୁ ଲାଗିଲେ। ମନ୍ତ୍ରୀଙ୍କ କାନକୁ କଥାଟା ବେଶୀ ଭାରି ଲାଗିଲା। ମନେ ମନେ ଚିନ୍ତିଲେ, ଆମ ଭଳିଆ

ତୃତୀୟ ବର୍ଷ, ପ୍ରଥମ ସଂଖ୍ୟା ଫେବୃଆରି, ୨୦୦୮

3rd Year, 1st Issue February, 2008

ନ୍ୟାସା ନବୋଦିତା ଉପସ୍ଥାପନ କରୁଛନ୍ତି



# ଆହ୍ୱାନ

ଓଡିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

ଶାନ୍ତଶିଷ୍ଟ ରାଜ୍ୟରେ ପୁଣି ନକ୍ସଲ ସମସ୍ୟା, ସେ ପୁଣି ଆଉ କେଉଁଠି ନୁହେଁ ଖୋଦ୍ ମୁଖ୍ୟମନ୍ତ୍ରୀଙ୍କ ନିର୍ବାଚନ ମଣ୍ଡଳୀରେ!!! ସେ ସଚିବଙ୍କ ଉପରେ ଖପ୍ପା ହୋଇ ଆଦେଶ କଲେ, କଥାଟାର ସତ୍ୟାସତ୍ୟ ପୁଙ୍ଖାନୁପୁଙ୍ଖ ତଦନ୍ତ କରି ଦିଅ। ସଚିବ ଥାନାବାବୁଙ୍କୁ ସେଇ କଥାଟି କହିଦେଲେ। ଏବେ ଥାନାବାବୁ ପଡିଲେ ଅଡୁଆରେ। ସେ ଦଣ୍ଡାସିକୁ ଖୋଜାକଲା ବେଳକୁ ସେ ସରକାରୀ ଖୋଲାଠିପି ଦୋକାନରେ ଦି ବୋତଲ ପକାଇ ଅସୁସ୍ଥ ହୋଇ ପଡିଥିଲା। ଅଗତ୍ୟା ଥାନାବାବୁ ରାମଗିରି ଥାନାକୁ ଫୋନ୍ କରି ଥାନାବାବୁ

କଅଁର ବାବୁଙ୍କୁ ନିଜ ସମସ୍ୟା ବିଷୟରେ ଜଣାଇଲେ। କହଁର ବାବୁ ଭାରି ଉସ୍ତାଦ ଲୋକ, ଏମିତି ଅନେକ ଥର ତା'ଙ୍କ ଥାନାରେ ନକ୍ସଲ ମାନେ ପଶିଛନ୍ତି, ଆଉ ହାତ ହତିଆରକୁ ହାତେଇ ନେଇ ପାର୍ ହେଇଚନ୍ତି। ସେ କହିଲେ, ଏଥିରେ ଚିନ୍ତା କଲା ଭଳିଆ କିଛି ନାହିଁ, ରିପୋର୍ଟ ଲେଖ ଆଉ ସେଥିରେ ଲେଖିଦିଅ ଦି ହଳ ପୋଲିସ୍ ବନ୍ଧୁକ ନେଇଛନ୍ତି, ଆଉ ଗୁଳିଗୁଳା ବି କେତେ ନେଇଛନ୍ତି ଇତ୍ୟାଦି ଇତ୍ୟାଦି, ହଁ ଯାହା ଲେଖିବ ସେଇ ସବୁ ଜିନିଷ କୁଆଡେ ଲୁଚେଇ ଦିଅ। ନ ହେଲେ ଥାନଠୁ କିଲୋମିଟର ଦୁରରେ ପକାଇ ତାକୁ ଖୋଜିବାର ଅଭିନୟ କରିପକାଅ।

ଉଦୟପୁର ଥାନାବାବୁଙ୍କୁ ସାହସ ଆସିଗଲା। ଥାନାଜିପ୍ ପଛରେ ଦଶଟା ବନ୍ଧୁକ ଆଉ କେତେ ଗୁଳିଗୁଳା ଧରି ବାହାରି ପଡିଲେ। ଗାଁ ସେ ମୁଣ୍ଡ ମୁଣ୍ଡିଆ (ସାନ ପାହାଡ) ପାଖରେ ଯାଇ ବନ୍ଧୁକ ସବୁକୁ ତଳେ ବିଛେଇ ଦେଲେ ଆଉ ଗୁଳି ସବୁକୁ ଦୁରକୁ ଦୁରକୁ କରି ଫୋପାଡି ଦେଇ ଅପେକ୍ଷାକଲେ। ତାଙ୍କ ଗାଡି ପଛେ ପଛେ ଆସୁଥିବା ଟିଭିର କ୍ୟାମେରାମ୍ୟାନ୍‌କୁ ଦେଖାଇ ଦେଖାଇ ସବୁ ବନ୍ଧୁକ ଜବତ କରି ଘୋଷଣା କଲେ, ଏ ସବୁ ଥାନାରୁ ଚୋରୀ ହୋଇଥିଲା। ଗୁଳିଗୁଳା ସବୁ ଗୋଟାଇ ଆଉଥରେ ବ୍ୟାଗ୍ ପୁରେଇ ଥାନାକୁ ଆସିଲେ ଆଉ ଶୀଘ୍ର ଏକ ରିପୋର୍ଟ ଲେଖିଦେଲେ। ସଞ୍ଜ ବେଳକୁ ରିପୋର୍ଟ ମନ୍ତ୍ରୀଙ୍କ ଟେବୁଲ୍ ଉପରେ ପହଞ୍ଚି ସାରିଥିଲା। ରାତି ନ'ଟା ବେଳକୁ ମୁଖ୍ୟମନ୍ତ୍ରୀ ମିଟିଂ ପାଇଁ ଖବର ଦେଲେ। ସଚିବଙ୍କ ଘରେ ଥିବା ନୈଶ୍ୟ ଭୋଜିକୁ ଯିବାକୁ ତରତର ହେଉଥିବା ସଚିବ ଅଗତ୍ୟା ବାଧ୍ୟ ଶିଶୁଟିଏ ପରି ମିଟିଂରେ ବସି ରହିଲେ।

ସକାଳୁ ସକାଳୁ ଖବର ପହଞ୍ଚିଲା, ଉଦୟପୁର ଥାନାକୁ ଉନ୍ନତ ଧରଣର ଥାନା କରାଯିବ। ଯେହେତୁ ସେଇଠି ନକ୍ସଲ ସମସ୍ୟା ଦେଖାଦେଇଛି, ତେଣୁ ଥାନା ବାବୁଙ୍କୁ ଅଧିକ ପାଉଣା ଦିଆଯିବ। ଅଧିକ ହାତ ହତିଆର ଦିଆଯିବ। ଥାନାବାବୁଙ୍କ ଯଦିଓ ମୋବାଇଲ୍ ଚୋରୀ ହୋଇଥିଲା, ଦରମା ବୃଦ୍ଧି ଖବର ଶୁଣି ଖୁସି ଲାଗିଲା। ମନେ ମନେ ଭାବିଲେ, ଏବେ କ୍ୟାମେରା ମୋବାଇଲ୍‌ଟିଏ କିଣିବେ। ଥାନାର ସମସ୍ତ କର୍ମଚାରୀ ଖୁସ୍। ଦି ଦିନ ହୋଇନି ଚୋରୀ ହେବାର ଥାନାରେ ମଦମାଂସର ଛୋଟ କାଟିଆ ଭୋଜିର ଆୟୋଜନ କରିବା ପାଇଁ ଯୋଗାଡ ଯନ୍ତ୍ର ହୋଇଗଲା। ନକ୍ସଲ ସମସ୍ୟା ଆଉ ଗୋଟିଏ ଜିଲ୍ଲାକୁ ବ୍ୟାପିଲା କହି ରାଜ୍ୟ ସରକାର ନକ୍ସଲ ମୁକାବିଲା କରିବା ପାଇଁ ଦିଲ୍ଲୀ ସରକାରଙ୍କଠାରୁ ଆଉ ଅଧିକା ୨୦୦ କୋଟି ଟଙ୍କାର ଅତିରିକ୍ତ ସାହାଯ୍ୟ ଦାବି କରିଛନ୍ତି। ଦଣ୍ଡାସି ଏବେ ରୋଜ ଥାନାକୁ ଯାଇ ନକ୍ସଲ ମାନଙ୍କ ଗତିବିଧି ଉପରେ ସୂଚନା ଦେଉଛି ଆଉ ଭଲ ପାଉଣା ପାଉଛି। ସବୁକିଛି ଠିକ୍‌ଠାକ୍ ଚାଲିଛି। ଏକା ରବି ବୁଝିପାରୁନି ସେ ଚୋରୀ କରିଥିବା ସତ୍ତ୍ୱେ ତାକୁ କେହି ଗିରଫ୍ କରୁ ନାହାନ୍ତି କାହିଁକି?

ତୃତୀୟ ବର୍ଷ, ପ୍ରଥମ ସଂଖ୍ୟା ଫେବୃଆରି, ୨୦୦୮

ନ୍ୟାସା ନବୋଦିତା ଉପସ୍ଥାପନ କରୁଛନ୍ତି

3rd Year, 1st Issue February, 2008



ଆହ୍ୱାନ

ଓଡିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

# କପିକ୍ୟାଟ୍‌ର ଯୁଗ

ଆଜିକାଲି ମୌଳିକତା ଏକ ବ୍ୟତିକ୍ରମ ପାଲଟି ଯାଇଛି । କୌଣସି କ୍ଷେତ୍ରରେ ଲୋକ ନୂଆ ଦିଗରେ ଚିନ୍ତାକରି ଅଭିନବ ପଥରେ ସଫଳତା ହାସଲ କରିବା ଲାଗି ଚେଷ୍ଟା କରିବା ପରିବର୍ତ୍ତେ ଅନ୍ୟମାନଙ୍କ ଦ୍ୱାରା ଅନୁସୃତ ପନ୍ଥାକୁ ଆପଣେଇ ନେବାରେ ସହଜ ଭାବୁଛନ୍ତି । ସେଥିପାଇଁ ବୋଧହୁଏ ସଫଳତା କେମିତି ପାଇବେ ଦିଗ୍‌ଦର୍ଶନ ଦେଉଥିବା ବହିର ବିକ୍ରି ଓ ଚାହିଦା ଆକାଶ ଛୁଆଁ । ଅନ୍ୟ ଜଣେ ସେ ନିଜ ଜୀବନରେ ସଫଳ ହୋଇଥାଉ ବା ନ ହୋଇଥାଉ ଜୀବନକୁ ଖୁସିରେ, ଶାନ୍ତିରେ ବା ସଫଳତାର ସହିତ କଟାଇବାର ବାଟ ସଂପର୍କରେ ଲେଖା ଲେଖି ଅନ୍ୟକୁ ସେଥିରେ ଚାଲିବାକୁ ପରାମର୍ଶ ଦିଅନ୍ତି । ନିଜ ଜୀବନରେ ସଂଘର୍ଷ କରୁଥିବା ବ୍ୟକ୍ତିର ଭ୍ରାନ୍ତ ଧାରଣା ହୋଇପଡେ ଯେ ଏଇଭଳି କୌଣସି ଗୋଟିଏ ବହି ପଢିଦେଲେ ଜୀବନର ଦିଗ ବଦଳାଇ ହେବ । ସାଧାରଣ ନାଗରିକର ଏହି ଚିନ୍ତାଧାରାର ଫାଇଦା ଉଠାଇ ଏଭଳି ଲେଖକମାନେ ଅନ୍ୟକୁ ସଫଳତାର ବାଟ ଦେଖାଇବାକୁ ଯାଇ ନିଜେ ରାତାରାତି ସଫଳ ହେବାର ବାଟ ଖୋଜି ନେଉଛନ୍ତି । ଏହି ଧାରାକୁ ବଜାୟ ରଖି ବିଭିନ୍ନ କ୍ଷେତ୍ରରେ 'ଗୁରୁ'ମାନଙ୍କ ଆବିର୍ଭାବ ହେଉଛି । ଆଧ୍ୟାତ୍ମିକ ସ୍ତରରେ ଅନେକ ଗୁରୁ ସୁଖମୟ ଜୀବନଯାପନର କଳା ଶିଖାଇବାରେ ବ୍ୟସ୍ତ । ଏହା ବ୍ୟତୀତ ଯୋଗଗୁରୁ, ପ୍ରବନ୍ଧନ ଗୁରୁ, ସ୍ୱାସ୍ଥ୍ୟ ଗୁରୁ, ଏମିତି ଗୁରୁ ମାନଙ୍କ ତାଲିକା ଖୁବ୍ ଲମ୍ବା ଏବଂ ତଦନୁଯାୟୀ ଭକ୍ତଙ୍କ ସଂଖ୍ୟା ଅପର୍ଯ୍ୟାପ୍ତ । ଏହି ଗୁରୁମାନେ ଅନ୍ୟ କିଛି ଜାଣନ୍ତୁ ବା ନ ଜାଣନ୍ତୁ ସେମାନେ ଅର୍ଥ ଉପାର୍ଜନର କଳାକୁ ଠିକ୍ ଜାଣିଛନ୍ତି । ସେମାନେ କେଉଁ ଦିଗ୍‌ଦର୍ଶନ ଦେଉଛନ୍ତି ତାହାକୁ ନ ଦେଖି ସେମାନଙ୍କ ନିଜ କାର୍ଯ୍ୟକଳାପକୁ ଅନୁସରଣ କଲେ ବୋଧହୁଏ ସଫଳତାର ଖିଅକୁ ଧରିହେବ । ତେବେ କ୍ୱଚିତ୍ ବ୍ୟକ୍ତିଙ୍କ ନିକଟରେ ନେତୃତ୍ୱ ନେବାର ଗୁଣ ଥାଏ । ଅଧିକାଂଶ କେବଳ ପଛରେ ଚାଲିବାକୁ ପସନ୍ଦ କରନ୍ତି । କାରଣ ଏଥିରେ ଅଜଣା ଆଶଂକାକୁ ସମ୍ମୁଖୀନ ହେବାର ବିପଦ ନଥାଏ । ଇଂରେଜୀରେ ଏକ ପ୍ରବାଦ ଅଛି, 'ୱାଇଜ୍ ମେନ୍ ଲର୍ଣ୍ଣ ଫ୍ରମ୍ ଦି ଏକ୍ସପିରିୟନ୍‌ସ ଅଫ ଦି ଫୁଲ୍' । ଏହାର ମାନେ ହେଲା ବୁଦ୍ଧିମାନ ଲୋକ ବୋକାର ଅନୁଭୂତିରୁ ଶିକ୍ଷା ନେଇଥାଏ । କେତେକାଂଶରେ ଏଭଳି ଚିନ୍ତାଧାରା ଠିକ୍ । କାରଣ ନିଆଁର ତାପକୁ ଜାଣିବାପାଇଁ ସମସ୍ତେ ଆବଶ୍ୟକ ନୁହଁ ବା ସମୁଦ୍ରର ଗଭୀରତାକୁ ଜାଣିବାକୁ ଯାଇ ବୁଡି ମରିବା ଜରୁରୀ ନୁହଁ । ତେବେ ଏହାର ଏକ ଭିନ୍ନ ଦିଗ ମଧ୍ୟ ରହିଛି । ଯଦି ସମସ୍ତେ ଅନ୍ୟ ଜଣର ପାଦଚିହ୍ନରେ ପାଦ ପକାଇ ଚାଲନ୍ତି ତେବେ ନୂଆଁ ବାଟ ଆବିଷ୍କାର ହୋଇନଥାନ୍ତା । ଆମେରିକା ଲୁଚି ହୋଇ ରହିଥାନ୍ତା । ଚନ୍ଦ୍ରକୁ କେହି ପହଞ୍ଚିପାରି ନଥାନ୍ତେ । ପ୍ରଥମେ ତେନଜିଂ ଓ ହିଲାରୀ ଏଭେରେଷ୍ଟ ଶୃଙ୍ଗର ଶୀର୍ଷରେ ପହଞ୍ଚିଲେ । ସେମାନେ ଅତି ଚତୁର ହୋଇ ନପାରନ୍ତି ସତ ତେବେ ତାଙ୍କ ପରେ ଯାଇଥିବା ଅନ୍ୟ ଚତୁର ବ୍ୟକ୍ତି କେବେହେଲେ ଏଭେରେଷ୍ଟ ଚଢିଥିବା ପ୍ରଥମ ବ୍ୟକ୍ତିର ମାନ୍ୟତା ପାଇବେ ନାହିଁ । କଲମ୍ବସ୍‌ଙ୍କ ପରେ ଯେଉଁମାନେ ଆମେରିକା ଗଲେ ବା ହିଲାରୀଙ୍କ ପରେ ଏଭେରେଷ୍ଟ ଚଢିଲେ ତାଙ୍କ ନାମ କେହି ମନେ ରଖିବାର ପ୍ରୟୋଜନ ଅନୁଭବ କରି ନାହାନ୍ତି । ଭିନ୍ନ ବାଟରେ ଚାଲିଲେ ପାଦରେ କଣ୍ଟା ଫୋଡି ହେବାର ଭୟ ନିଶ୍ଚୟ ଅଛି । ତେବେ ପ୍ରଥମେ ନିଜେ ସେ ବାଟ ଖୋଜିଥିବାର ମଜା ବି ରହିଛି ।

ଆଜିକାଲିର ପ୍ରତିଯୋଗିତାମୂଳକ ଦୁନିଆରେ ଜଣେ କୌଣସି ନୂତନ ଚିନ୍ତାକୁ ବାସ୍ତବରେ ପରିଣତ କରିବା ପୂର୍ବରୁ ଏହାର ନକଲ ହେବା ଆରମ୍ଭ ହୋଇଯାଉଛି ।



# ଆହ୍ୱାନ

ଓଡିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

ହଲିଉଡ୍‌ରେ ସିନେମା ମୁକ୍ତିଲାଭ କରିବା ମାତ୍ରେ ଏଠାରେ କିଭଳି ନକଲ ପ୍ରସ୍ତୁତ କରିହେବ ଚିନ୍ତା ଆରମ୍ଭ ହୋଇଯାଏ। ଏପରିକି ମହେଶ ଭଟ୍ଟ ଓ ବିକ୍ରମ ଭଟ୍ଟ ଭଳି ନାମୀ ନିର୍ଦ୍ଦେଶକ ଖୋଲାଖୋଲି ହଲିଉଡ୍ ସିନେମାକୁ ନକଲ କରିବା କଥା ସ୍ୱୀକାର କରିଛନ୍ତି। ତାଙ୍କ
କହିବଆ ଅନୁସାରେ ଯଦି ଗୋଟିଏ ହିଟ୍ ଫର୍ମୁଲା ପ୍ରସ୍ତୁତ ହୋଇଛି ତାକୁ ଦେଶୀ ଷ୍ଟାଇଲ୍‌ରେ ଉପସ୍ଥାପିତ କଲେ କ୍ଷତି କଣ? ଆମେରିକାରେ ବହୁ ଜନପ୍ରିୟ ସିରିୟଲ୍ 'ହୁ ୱାଣ୍ଟସ୍ ଟୁ ବି ଏ ମିଲିୟନେୟର୍' ଅନୁସରଣରେ ଭାରତବର୍ଷରେ 'କୌନ ବନେଗା କରୋଡପତି' ଆକାରରେ ଲୋକଙ୍କ ମନ ଜିଣିନେବାରେ ସଫଳ ହୋଇଥିଲା। ସେହିପରି 'ଆମେରିକାନ୍ ଆଇଡଲ୍' ନକଲରେ 'ଇଣ୍ଡିଆନ୍ ଆଇଡଲ୍' ଏବଂ 'ବିଗ୍ ବ୍ରଦର୍' ଅନୁସରଣରେ 'ବିଗ୍ ବସ୍' ଭଳି ଧାରାବାହିକ ଭାରତୀୟ ଚ୍ୟାନେଲ୍‌ରେ ଦେଖିବାକୁ ମିଳିଛି।

ସେହିପରି ଗୋଟିଏ ନ୍ୟୁଜ୍ ଚ୍ୟାନେଲ୍ ଅପରାଧ ଉପରେ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଆରମ୍ଭକଲେ ଅପରାଧଭିତ୍ତିକ କାର୍ଯ୍ୟକ୍ରମର ସୁଅ ଛୁଟିବା ଆରମ୍ଭ ହେଉଛି। ନୂଆ କଳାକାରଙ୍କ ଗୀତ ପ୍ରତିଯୋଗିତା, ହାସ୍ୟରସ କଳାକାରଙ୍କ ଅଧ୍ୟାୟ ପରେ ଅଧ୍ୟାୟ ପ୍ରସାରଣ ପ୍ରାୟ ଏକାପ୍ରକାର ବେଶ ପଟୁଆର ହୋଇଥିବା ସ୍ତ୍ରୀ ଲୋକମାନଙ୍କର ଶାଶୁବୋହୁ ଧାରାବାହିକ ମାନଙ୍କରେ କଳିକଜିଆରୁ ସ୍ପଷ୍ଟ ଜଣାପଡୁଛି ଯେ କେହି ନୂଆ କିଛି କରିବାକୁ ଚାହୁଁନାହାନ୍ତି। ଭାରତବର୍ଷ ଏକ କପିକ୍ୟାଟ୍‌ଙ୍କ ଦେଶ ପାଲଟି ଯାଇଛି। କଂପ୍ୟୁଟର ସଫ୍ଟୱେର୍ ଠାରୁ ଆରମ୍ଭ କରି ମ୍ୟୁଜିକ୍ ବା ଫିଲ୍ମ ପାଇରେସି, ଡ୍ରେସ ଡିଜାଇନ ଏପରିକି ବହିର ବିଷୟବସ୍ତୁକୁ ନେଇ ନକଲ ଏକ ଦୈନନ୍ଦିନ ବ୍ୟାପାର ପାଲଟି ଗଲାଣି। ଛାପା ଗଣମାଧ୍ୟମ ବି କାହିଁ ପଛରେ ପଡିବେ। ଗୋଟିଏ ଖବର କାଗଜ ଯଦି ମୌଳିକ ଚିନ୍ତାକରି କୌଣସି ଏକ ନୂତନ ସ୍ତମ୍ଭ ବା ଫଟୋଫିଚର୍ ଆରମ୍ଭ କଲା ତାହାକୁ ସଙ୍ଗେ ସଙ୍ଗେ ସିଧାସଳଖ ଉତ୍ତରା ଯାଉଛି। ଗୋଟାଏ କାଗଜ ସ୍ଥାନୀୟ ମଡେଲ୍ ମାନଙ୍କର ବଡ ଫଟୋଦେଲେ ଅନ୍ୟମାନେ ସେହି ଦୌଡରେ ସାମିଲ୍ ହେବାକୁ ବାଡିଆବାଡି। ଆଜି ନକଲ ଉପରେ ଧ୍ୟାନକେନ୍ଦ୍ରିତ କରୁଥିବା ବ୍ୟକ୍ତି ବା ସଂସ୍ଥାମାନେ ସାମୟିକ ଫାଇଦା ପାଇପାରନ୍ତି, କିନ୍ତୁ ଏହା ତାଙ୍କର ଛବିରେ ସୁଦୂରପ୍ରସାରୀ ପ୍ରଭାବ ପକାଇବା ସ୍ୱାଭାବିକ। କାରଣ ଲୋକେ ମୌଳିକ ଓ ନକଲର ପାର୍ଥକ୍ୟ ଜାଣନ୍ତି।

ଧରିତ୍ରୀର ୨୧ ଜାନୁଆରି ୨୦୦୮

## ବଳି ପାଇଁ ବ୍ୟଥା

ପ୍ରଶାନ୍ତ କୁମାର ନାୟକ

ମୁଁ ବଳିପ୍ରଥାକୁ ବିରୋଧ କରେ। କିନ୍ତୁ ବଳିପ୍ରଥାକୁ ବିରୋଧ କରୁଥିବା ଗୋଷ୍ଠୀ ମାନଙ୍କ ସହ ମୁଁ ସହମତ ହୋଇପାରୁନି ଏଇଥିପାଇଁ ଯେ ସେମାନଙ୍କ ବିରୋଧର ବଳିଷ୍ଠ କାରଣ କ'ଣ ବୁଝାପଡୁନି। ନିର୍ଦ୍ଦିଷ୍ଟ କେତେକ ଶକ୍ତିପୂଜାରେ ମହିଷ, ବୋଦା, ଗଞ୍ଜା ଆଦି ପଶୁପକ୍ଷୀଙ୍କୁ ବଳି ଚଡାଯାଏ। ମୋ ମତରେ ଯେଉଁମାନେ ଏ ପ୍ରଥାରେ ବିଶ୍ୱାସ ରଖନ୍ତି ସେମାନେ ନିଶ୍ଚୟ ଅନ୍ଧବିଶ୍ୱାସୀ। କାରଣ ସେମାନଙ୍କ କାମନାର ଚରିତାର୍ଥ ପାଇଁ କେତୋଟି ନିର୍ବାକ୍ ନିଷ୍ପାପ ପଶୁଙ୍କ ରକ୍ତକୁ କୌଣସି ଦେବାଦେବୀ କେବେ ବି ଅପେକ୍ଷା କରି ନଥିବେ। ତଥାପି ଏହା ଏକ ପୁରାତନ ପ୍ରଥା। ତେଣୁ ଏଥିରୁ ମୁକୁଳିବାଟା ଏତେ ସହଜ ନୁହେଁ। କିନ୍ତୁ ଶିକ୍ଷା ଓ ଚେତନାର ବିକାଶରେ ଏହା ଆସ୍ତେ ଆସ୍ତେ ଲୋପ ପାଇଯିବ। ଆଇନ ମାଧ୍ୟମରେ ମଧ୍ୟ ଏହାକୁ ଲୋପ କରିବା ଏତେ ସହଜ ନୁହେଁ। କାରଣ ଆଇନ ଗଢୁଥିବା ଜନପ୍ରତିନିଧି ଏବଂ

ତୃତୀୟ ବର୍ଷ, ପ୍ରଥମ ସଂଖ୍ୟା ଫେବୃଆରି, ୨୦୦୮
3rd Year, 1st Issue February, 2008



ଆହ୍ୱାନ
ଓଡିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

ଆଇନକୁ କାର୍ଯ୍ୟକାରୀ କରୁଥିବା ଅଧିକାରୀମାନଙ୍କ ମଧ୍ୟରୁ ଅନେକ ଯେ ତାନ୍ତ୍ରିକଙ୍କ ଦୁଆରେ ଭିଡ ଜମାନ୍ତି ତାହା କାହାକୁ ଅଛପା ନୁହେଁ।

ଏବେ ବଳିପ୍ରଥା ବିରୋଧୀଙ୍କ କଥା ବିଚାର କରାଯାଉ। ବଳିପ୍ରଥାରେ ପ୍ରଥାକୁ ବାଦ୍ ଦେଲେ ବଳିରେ କ'ଣ ହୁଏ? କେତେକ ନିରୀହ, ନିଷ୍ପାପ ଓ ନିର୍ବାକ୍ ପଶୁପକ୍ଷୀଙ୍କୁ ହତ୍ୟାକରି ସେମାନଙ୍କ ରକ୍ତକୁ ଦେବାଦେବୀଙ୍କୁ ଉତ୍ସର୍ଗ କରାଯାଏ। ଏଠାରେ ଯାହା ପ୍ରଧାନ କର୍ମହେଲା ତାହା ହେଲା ପଶୁହତ୍ୟା। ତେବେ ଆମେ ଯଦି ବାସ୍ତବରେ ପଶୁପ୍ରେମୀ ଓ ପଶୁହତ୍ୟାର ବିରୋଧୀ ତେବେ ଆମର ବିରୋଧ ବଳିପ୍ରଥାକୁ କାହିଁକି ଏବଂ ଅନ୍ୟ କେଉଁଟିକୁ ନୁହେଁ କାହିଁକି? ଆମ ଦେଶର, ରାଜ୍ୟର ବଡ ବଡ ସହରଠାରୁ ଆରମ୍ଭ କରି ଛୋଟ ସହର, ବଜାର, ଛକ ଓ ନିପଟ ମଫସଲରେ ପ୍ରତିଦିନ ଅବିଚାରିତ ଭାବେ ହଜାର ହଜାର ସଂଖ୍ୟାରେ ଗାଇଗୋରୁ, ଛେଳି, ମେଣ୍ଢା, ଘୁଷୁରି, କୁକୁଡା ଆଦି ଜୀବଙ୍କୁ ହତ୍ୟା କରାଯାଉଛି ଏବଂ ସେମାନଙ୍କ ମାଂସରେ ସୁସ୍ୱାଦୁ ବ୍ୟଞ୍ଜନ ପ୍ରସ୍ତୁତ କରି ବେଶ୍ ଫୁଟାଣି ମାରି ପାରୁଛୁ। ବ୍ରତ, ବିବାହ ଓ ଜନ୍ମଦିନ ଆଦି ଉତ୍ସବରେ ଏହି ପଶୁପକ୍ଷୀଙ୍କ ମାଂସରୁ ପ୍ରସ୍ତୁତ ତିଅଣ ନଥିଲେ ତାହା ଭୋଜିଭାତରେ ଗଣା ହେଉନି। ତତ୍‌ସହିତ ସେ ପ୍ରକାର ଭୋଜି ପ୍ରଦାନ କରୁନଥିବା ବ୍ୟକ୍ତିଟି ମଧ୍ୟ କୃପଣ ଶ୍ରେଣୀଭୁକ୍ତ ହୋଇ ଏକ ନିମ୍ନପାହ୍ୟାର ବ୍ୟକ୍ତି ପାଲଟି ଯାଉଛି ଅନ୍ୟ ସାଙ୍ଗସାଥୀଙ୍କ ଆଗରେ। କିନ୍ତୁ ଚିକେନ୍ ମଟନ୍ ବିରିୟାନି କିମ୍ବା ଆଦି ପ୍ରସ୍ତୁତ କରି ଖୁଆଉଥିବା ଲୋକଟିର ବଦାନ୍ୟତାର ପ୍ରଶଂସା ବିସ୍ତାରିବା ଏକ ବୋକାମି ହେବ।

ସର୍ବସମ୍ମୁଖରେ ଲୋକ ଗହଳିରେ ବଳିପ୍ରଥା ନିନ୍ଦନୀୟ ଓ ବର୍ଜନୀୟ ତେବେ ଆମ ସହର ବଜାର ମାନଙ୍କରେ ଥିବା ଚିକେନ୍ ସେଣ୍ଟର୍, ମଟନ ସେଣ୍ଟର, କ'ଣ ନିର୍ଜନ ସ୍ଥାନରେ ଅବସ୍ଥିତ? ଜନଗହଳିପୂର୍ଣ୍ଣ ରାସ୍ତାକଡରେ ଛାଲ ଉତୁରା ହୋଇ ଓଲଟା ଝୁଲୁଥିବା ଛେଳି ମେଣ୍ଢାଙ୍କର ଶବ ଗୁଡିକ ସତରେ କଣ ନଡିଆ ବାହୁଙ୍ଗାରେ ଝୁଲୁଥିବା ବାଇଚଡେଇ ବସା ପରି ଏତେ ମନୋମୁଗ୍ଧକର ଯେ ଏହାକୁ ଆମେ ସ୍ୱାଭାବିକ ଧରିନେବା? ଯେଉଁମାନେ ତାମସିକ ଖାଦ୍ୟର ପୂଜାରୀ, ଜିହ୍ୱାଲାଳସାର ଦାସ ସେମାନଙ୍କ ପାଇଁ ଏ ସବୁ ଦୋକାନ ଗୁଡିକ କିନ୍ତୁ ଆକର୍ଷଣୀୟ ସ୍ଥାନ। କିନ୍ତୁ ଯେଉଁମାନେ ନିଜକୁ ବିବେକୀ କହୁଛନ୍ତି ଓ ପଶୁହତ୍ୟାକୁ ନିନ୍ଦନୀୟ ବିଚାରୁଛନ୍ତି ଏବଂ ଯେଉଁଥିପାଇଁ ଗୋଟିଏ ପୁରାତନ ପ୍ରଥା ବିରୋଧରେ ସ୍ୱର ଉଠାଉଛନ୍ତି ସେମାନେ ନିଶ୍ଚୟ ଅଭିନନ୍ଦନୀୟ କିନ୍ତୁ ସେମାନଙ୍କ ବିରୋଧ କେବଳ ଏହି ପ୍ରଥା ବିରୁଦ୍ଧରେ କାହିଁକି? ଯଦି ଆମକୁ ବିରୋଧ କରିବାର ଅଛି ତେବେ ସର୍ବପ୍ରଥମେ ପଶୁହତ୍ୟାକୁ ବିରୋଧ କରାଯାଉ। ଯଦି ଆମକୁ ଆଇନ୍ ପ୍ରସ୍ତୁତ କରିବାର ଅଛି, ତେବେ ପ୍ରଥମେ ଆଇନ୍ ମାଧ୍ୟମରେ ପଶୁହତ୍ୟାକୁ ବନ୍ଦ କରାଯାଉ।

ଗୋଟିଏ ପାର୍ବଣରେ ଯେତେ ସଂଖ୍ୟକ ପଶୁ ହତ୍ୟା କରାଯାଏ, ତା'ଠାରୁ କେତେ ଶହ ଅଧିକ ଗୁଣରେ ସମଜାତୀୟ ପଶୁଙ୍କୁ ଆଖପାଖରେ ପ୍ରତିଦିନ ହତ୍ୟା କରାଯାଏ ନିର୍ବିଚାରରେ, ନିର୍ବିରୋଧରେ। ବଳିପ୍ରଥାର ପଶୁ ଏବଂ କଂସେଇ ଖାନାର ପଶୁ ଭିତରେ ଏପରି କିଛି ଅସାମଞ୍ଜସ୍ୟ ନାହିଁ ଯେ, ଆମେ ଗୋଟିଏକୁ ବିରୋଧ କରୁଥିବା ବେଳେ ଅନ୍ୟଟିକୁ ପୃଷ୍ଠପୋଷକତା କରିବା। ଖବରକାଗଜରେ ନାଁ ଛାପିବାପାଇଁ ହେଉ କି ନିଜ ବାକ୍ ପଟୁତା ସିଦ୍ଧ କରିବା ପାଇଁ ହେଉ, ଏହି ବିରୋଧ ଆମ ତୁଣ୍ଡର କଥା ନ ହୋଇ ଆମ ଅନ୍ତରର କଥା ହେଉ। ମୋର ଦୃଢ ବିଶ୍ୱାସ ଆମେ ଆମ ଖାଦ୍ୟରୁଚିରେ ପରିବର୍ତ୍ତନ ଆଣି ଆମ





ସହର ବଜାର ଛକରେ ଲୋକଗହଳିରେ ଏହି ନିରୀହ ପଶୁମାନଙ୍କ ହତ୍ୟା ବନ୍ଦ କରିପାରିଲେ ବଳିପ୍ରଥା ପରି ଘୃଣ୍ୟ ପ୍ରଥା ବନ୍ଦ ହେବାକୁ ବେଶି ସମୟ ଲାଗିବ ନାହିଁ କି ଆମର ଜନ ପ୍ରତିନିଧିମାନଙ୍କୁ ଅର୍ଥନୈତିକ ବିକାଶ ଚିନ୍ତାଛାଡି ବଳିପ୍ରଥା ବନ୍ଦପାଇଁ ଆଇନ ଗଢିବାରେ ସମୟ ଅପଚୟର ଆବଶ୍ୟକତା ପଡିବ ନାହିଁ।

ବଲାଙ୍ଗୀରର ଶୁଲିଆ ଯାତ୍ରାରେ ୫୦ ଜଣ ମାଜିଷ୍ଟ୍ରେଟ୍, ୪ ପ୍ଲାଟୁନ୍ ପୋଲିସ୍ ଫୋର୍ସ, ୫୦ ଜଣ ପୋଲିସ୍ ଅଫିସର, ୩୦୦ ହୋମ୍‌ଗାର୍ଡ, ଡିଏସ୍‌ପି ଓ ଏସ୍‌ପିଙ୍କ ଉପସ୍ଥିତି ସତ୍ତ୍ୱେ ସେଠାରେ ନିରୀହ ପଶୁଙ୍କ ରକ୍ତର ନଦୀ ଆମକୁ ଯେଉଁ ଶିକ୍ଷା ଦେଇଛି ତା' ଉପରେ ସମସ୍ତେ ଚିନ୍ତା କରିବା ଦରକାର।

ଧରିତ୍ରୀ ୨୧ ଜାନୁଆରି ୨୦୦୮

## କୁନି ଭାଉଜ

'କୁନି ଭାଉଜ କୁନି ଭାଉଜ' ଡାକ ଶୁଣି କୁନି ଘର ବାହାରକୁ ଆସିଲା ବେଳକୁ ପଡିଶାଘର ଲଖୀ (ଲକ୍ଷ୍ମୀ) କାନ୍ଦ କାନ୍ଦ ହୋଇ ଠିଆ ହୋଇଛି। କ'ଣ ହେଇଚି ବୋଲି ପଚାରିବା ପୂର୍ବରୁ ଲଖୀ ଆମ ଘରକୁ ଶୀଘ୍ର ଆସ କହି ଦଉଡି ପଳାଇଲା। କୁନି କ'ଣ କରିବ କିଛି ଭାବି ପାରିଲା ନାହିଁ ଅଗତ୍ୟା, ଦୁଆରରେ କିଲୁଣିଟା ଦେଇ ଶୀଘ୍ର ଶୀଘ୍ର ପଡିଶା ଘରକୁ ପଳାଇଲା। ତଳେ ଲଖୀବୋଉ ପଡି ଛଟପଟ ହେଉଥାନ୍ତି, ପେଟ କାଟୁଚି ବୋଲି କାନ୍ଦୁଣୁ ମାନ୍ଦୁଣୁ ହେଉଛନ୍ତି। କୁନି ସାଙ୍ଗେ ସାଙ୍ଗେ ପାଣି ଗିଲାସେ ନେଇ ଦେଲା, ମାତ୍ର ସାଙ୍ଗେ ସାଙ୍ଗେ ସେ ପାଣି ବାନ୍ତି ହୋଇଗଲା। ବାହା ହେଇକି ସବୁ ଚାରିଟା ମାସ ହେଇଚି, ଏଇଟା ନୂଆଁ ଗାଁଟେ, କାହାକୁ ବି ତ ସେ ଜାଣିନି, କ'ଣ କରିବ। ମାତ୍ର ବୁଦ୍ଧିଖଟାଇ ସେ ଲଖୀକୁ କହିଲା ଯା ବାଡିପଟ ଖଳାରେ ଚଷା ଧାନ ବେଙ୍ଗଳା ପକାଉଥିବ କହିବୁ ଶଗଡ ନେଇ ଆସିବ, ବୋଉକୁ ନେଇ ସହରକୁ ଯିବା। ଦୋପହର ବିତିଗଲା ବେଳକୁ କୁନି ସହରରୁ ଫେରିଲା। ଗାଁରେ ଯେତେବେଳେ ସେ ବସ୍‌ଷ୍ଟାଣ୍ଡରେ ବସ୍‌ରୁ ଓହ୍ଲାଇଲା, ତା'କୁ ଲାଗିଲା ଯେମିତି ସବୁ ତା'କୁ ଅପରାଧୀ ପରି ଦେଖୁଚନ୍ତି। ଘରକୁ ଗଲାବେଳକୁ ଦୁଆରେ ବସିଥିଲା ଶନିଆ। କୁନି କୁ ଦେଖି ଘର ଭିତରକୁ ଚାଲିଗଲା। କୁନି ବୁଝିପାରୁଥିଲା ତା' ଭୁଲ କେଉଁଠି ହେଉଚି, ସେ କାହାକୁ କିଛି ନ ଜଣାଇ, କବାଟରେ ତାଲା ନ ଦେଇ, ବାହାରି ଯାଇଥିଲା। ସେ ଦିନସାରା କିଛି ଖାଇନି, ଅବଶ୍ୟ ଯିବାବେଳକୁ ସେ ରୋଷେଇ କରି ରଖି ଯାଇଥିଲା। ସିଧା ଚୁଲି ପାଖକୁ ଯାଇ ଦେଖିଲା, ହାଣ୍ଡିରୁ ଭାତ ଅଧା ସରିଚି, ଆଶ୍ୱସ୍ତ ହେଲା ଯେ ଶନିଆ ଭୋକରେ ନାହିଁ। ନିଜେ କିଛି ଖାଇବାପାଇଁ ତା' ମନ ହେଲାନି। ଲୁଗାଟା ବଦଳାଇ ଦେଇ ଘର ମଝି ଅଗଣା ପିଣ୍ଡାରେ ବସି ପଡିଲା।

ଶନିଆ କିଛି କହୁନଥିଲା, କୁନିକୁ କଥାଟା କିଛି ଠିକ୍ ଲାଗୁନଥିଲା। ସେ ନିରବତା ଭାଙ୍ଗିବାପାଇଁ କହିଲା, 'କ'ଣ ହେଲା? ମୋ ଉପରେ ରାଗିଚ ନା କ'ଣ?' ଶନିଆ ଧିର ସ୍ୱରରେ କହିଲା, 'ଅନ୍ତତଃ ଥରେ ଭାବିଥାଆନ୍ତ? ତୁମେ ଗାଁର ନୂଆବୋହୁଟେ ହେଇ କୋଉ ସାହସରେ ଏକା ଏକା ଶଗଡରେ ବସି ପଳାଇଲ।' କୁନି ଫେଁ କରି ହସିଦେଇ କହିଲା, 'ଓହ୍, କାଇଁ ତୁମର ମୋଟର ଗାଡିଟାରେ ବସି ଯାଇଥାନ୍ତି।' କୁନିର ଏଇ କଥାରେ ବିରକ୍ତ ହୁଏ ଶନିଆ, ସବୁ କଥାକୁ ହାଲୁକାରେ ନେଇଯାଏ ବୋଲି ରାଗେ। ସେ କେମିତି ଏକ ରାଗ ଓ ଅଭିମାନ ମିଶା ଚାହାଣୀରେ ଦେଖୁଥିଲା କୁନିକୁ। କୁନି କହିଲା, 'ଆରେ, କୁହତ, ଯଦି ସେ ଆମ ନିଜ ଭାଉଜ କି ନାନିଟେ ହେଉଥାଆନ୍ତେ, ଆଉ ଏମିତି କଷ୍ଟରେ ମରୁଥାଆନ୍ତେ, ତ' କ'ଣ ମୁଁ ନୂଆ ବୋହୁ



ଆହ୍ୱାନ
ଓଡ଼ିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

ବୋଲି ଘରେ ରହିଥାନ୍ତି ଆଉ ତା'ଙ୍କୁ ମରିବାକୁ ଦିଅନ୍ତି?' ଶନିଆର ରାଗ ଏକାଥରେ ଉଡିଗଲା। ସେ ନିରବ ହୋଇ କହିଲା, 'ତୁମେ ଠିକ୍ କହୁଚ ଯେ, ହେଲେ ଗାଁ ବାଲା କେତେ କଥା କହୁଚନ୍ତି।' କୁନି କିଛି କହିଲା ନାହିଁ। ସେ ଯା'ହେଉ ଅଭିମାନ ଓ ରାଗର ପାଚେରୀ ହଜିଯାଇଥିଲା। ଅବଶ୍ୟ ଶନିଆ ଖୁସି ହେଇଥିଲା, ଖାଲି ଯାହା ଗାଁ ବାଲାଏ କଣ କହିବେ କଣ ନ କହିବେ ଭାବୁଥିଲା।

ଦି ଦିନପରେ ଲଖୀ ବୋଉ ଘରକୁ ଫେରିଲା। ଘରକୁ ଆସୁ ଆସୁ, କୁନିକୁ ଆସି ସ୍ନେହ କରି କହିଲା, ମୋର ଝିଅଟା ବି ଏତେ କାମ କରିବ ନାହିଁ, ଆର ଜନ୍ମରେ ତୁ ମୋ ମା' ଥିଲୁ। ସେ ଯା'ହେଉ ଲଖୀ ବୋଉ ଆସିଲା ପରେ ଗାଁ ସାରା କୁନି ପ୍ରତି ଉଠିଥିବା ବିଦ୍ରୋହକୁ ଥଣ୍ଡା କରିଦେଲା। ଏବେ ଆଉ କିଏ କୁନିକୁ ଦୋଷୀ ବୋଲି ଭାବୁନଥିଲେ। ହେଲେ ଗାଁର ନୂଆବୋହୁଟା ହଠାତ୍ ଗାଁର ନେତ୍ରୀ ହେଇଗଲା। ଏହି କଥା କବିରାଜଙ୍କ କାନରେ ପଡିଲାପରେ ସେ ଘୋଷଣା କରିଦେଲେ, ଆସନ୍ତା ସନ ଗାଁର ସରପଞ୍ଚ ପ୍ରାର୍ଥୀପାଇଁ ସେ କୁନିର ନାଁ

ଦେବେ। ଶନିଆର ଖୁସି ଦେଖିଲେ ହେଲା। ସତକୁ ସତ ମାସ ଦିଟାରେ ଗାଁରେ ପଞ୍ଚାୟତ ପାଇଁ ନିର୍ବାଚନ ହେବା ଘୋଷଣା ହେଲା, ଆଉ କବିରାଜ ଆଜ୍ଞାଙ୍କ ଉଦ୍ୟମରେ କୁନି ହେଲା ପ୍ରାର୍ଥିନୀ। ଘର ଛାଡି ଦ୍ୱାର ଦ୍ୱାର ବୁଲି ଭୋଟ ମାଗିଲା କୁନି। ଆଉ କହିବା ଜରୂରୀ ନୁହେଁ କୁନି ହୋଇଥିଲା ଆମ ଗାଁର ନୂଆ ସରପଞ୍ଚ। ଶନିଆ ଆଜିକାଲି ଭାରୀ ଖୁସି ରହୁଥିଲା, ଅବଶ୍ୟ ଧାନ ଜମି କଥା ଭୁଲି ଯାଇଥିଲା। ଗାଁ ପଞ୍ଚାୟତର ସବୁ କାମ କହିବାକୁ ଗଲେ ଶନିଆ ନିଜର ଆଧିପତ୍ୟ ବୋଲି ଭାବି ନେଇଥିଲା। ଚାକିରୀ କରାଇବା କହି ଲୋକମାନଙ୍କ ପାଖରୁ ଟଙ୍କା ନେବା, କାହାକୁ ବାର୍ଦ୍ଧକ୍ୟ ଭତ୍ତା କରାଇବା କହି ଟଙ୍କା ମାଗିବା ଆଦି ସବୁ କାମରେ ସିଦ୍ଧହସ୍ତ ହୋଇଗଲା ଶନିଆ। କୁନି ସବୁ ଶୁଣିଲେ ବି କିଛି କହିପାରେନି। ଯଦି କେବେ ଏହି କଥା ଉଠୁଥିଲା ତ ଶନିଆ ମଦ ପିଇଦେଇ ଘରେ ପାଟିତୁଣ୍ଡ କରିବା ଆରମ୍ଭ କରିଦେଉଥିଲା, ଆଉ ଲୋକଲାଜ ଭୟରେ କୁନି ଚୁପ୍ ରହୁଥିଲା।

ଗାଁରେ ପୋଖରୀ ଖୋଳାହେଲା, ଦଶଫୁଟ ଗଭୀର ପୋଖରୀ ଛଅ ଫୁଟ ରେ ରହିଗଲା। କବିରାଜ ଆଜ୍ଞା କୁନିକୁ ଏଇ ସବୁ କଥା କହିଲା ପରେ ସେ ନିରବ ରହିଲା, କବିରାଜ ଆଜ୍ଞା ସବୁ ବୁଝିଗଲେ, ଯାହା ହେଲେ ବି ଗାଁର ବୋହୁଟିଏ ସେ। ଦିନକୁ ଦିନ ଶନିଆର ଶନିଚର ଗୁଣ ଯୋଗୁଁ ଗାଁରେ ବଦନାମ ହେବା ଆରମ୍ଭ ହେଲା। କୁନି ଯେତେ ଚେଷ୍ଟାକଲେ ବି ଶନିଆ ଆଉ ବଦଳିବାର ଗୁଣ ଦେଖାଇଲା ନାହିଁ। ହଠାତ୍ ଦିନେ କୁନି ଘୋଷଣା କଲା ଯେ, ସେ ଆଉ ସବୁ ସହିବ ନାହିଁ। ଦି ପହର ବେଳକୁ ଦେଶୀ ମହୁଲି ପକାଇ ଗାଁ ଦାଣ୍ଡରେ ଛାତି ଫୁଲାଇ ଆସୁଥିଲା ଶନିଆକୁ ଗୋଡେଇ ଗୋଡେଇ ଥାନାବାବୁ ଧରିଲେ, ଆଉ ଜିପ୍ ପଛରେ ଛେଳିମେଣ୍ଢାକୁ ଧରିଲା ଭଳିଆ ପକାଇ ଗାଁରୁ ବାହାରି ଚାଲିଗଲେ। ସଞ୍ଜବେଳକୁ ଗାଁ ଦାଣ୍ଡରେ ସବୁ ଗୁଣୁଗୁଣୁ ହେଉଥାଆନ୍ତି। ଦିନସାରା କୁନି ଘରୁ ବାହାରି ନଥିଲା, କିଛି ଖାଇବା ତା ଗଳାରୁ ତଳକୁ ଗଡିଲା ନାହିଁ, ତେଣୁ ରୋଷେଇ ହେଇଥିବା ଭାତ ସେଇମିତି କାକର ହେଇ ହାଣ୍ଡିରେ ପଡିଥିଲା। ସଞ୍ଜବେଳକୁ ଲଖୀବୋଉ ଆସି ଗରମ ଭାତ ଡାଲି ସହିତ ଚାଉଳବଟା ଦିଆ ଦେଶୀଆଳୁ ଭଜା ନିଜ ହାତରେ ବସି ଖୁଆଇ ଦେଲା। କୁନି ଲଖୀବୋଉ କାନ୍ଧରେ ମୁଣ୍ଡଦେଇ କାନ୍ଦୁଥିଲା। ରାତି ହେଉ ହେଉ ଥାନାବାଲା ଆଣି ଶନିଆକୁ ଗାଁ ମୁଣ୍ଡରେ ପକାଇ ଦେଇ ଚାଲିଗଲେ। ଯାଉ ଯାଉ ଥାନାବାବୁ କହୁଥିଲେ, 'ଆଉ ଥରେ ଯଦି ତୋ ବିଷୟରେ



ଆହ୍ୱାନ
ଓଡ଼ିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

ଖବର ମିଳିବ, ବୋଇଲେ ଆଜି ଯାହା ହେଇଚି ତାହା କିଛି ନାହିଁ ତୋ ପିଠିରେ ଗାତ ଖୋଳିଦେବୁ ।

ଦି ଜଣ ଯୁଆନ୍ ଟୋକା ଶନିଆକୁ ଟେକି ଆଣି ତା' ଘର ଆଗରେ ପକାଇଦେଲେ। କୁନି ଘରୁ ବାହାରି ଯାଇ ଶନିଆକୁ ଘର ଭିତରକୁ ଟାଣି ଆଣିଲା । ଗରମ ପାଣି କରି ଦେହହାତ ସବୁ ପୋଛିଦେଲା । ଖାଇବାକୁ ଆଉ ଯୁ ନଥିଲା ଶନିଆର । ରାତିସାରା ଦେହହାତ ଚିପାଚିପି କରିଦେଲା କୁନି । ସକାଳ ପହରୁ ଆଖି ଲାଗି ଯାଇଥିଲା, ନିଦ ଭାଙ୍ଗିଲା ବେଳକୁ ଶନିଆ ନଥିଲା, ବୋଧହୁଏ ପୋଖରୀ ଆଡେ ଯାଇଥିବା ଭାବି, କୁନି ଶୀଘ୍ର ଶୀଘ୍ର ଚାଉଳବାଟି ସରୁ ଚକୁଳି ଦିଟା କରିବା ପାଇଁ ଯୋଗାଡ କରୁଥିଲା, ହଠାତ୍ ଘର ବାହାରେ ଘୋ ଘୋ ଶବ୍ଦ ଶୁଣି ସେ ବି ଘରୁ ବାହାରକୁ ବାହାରିଲା ବେଳକୁ ଶନିଆ ସକାଳୁ ସକାଳୁ ମଦ ପିଇଦେଇ ଦୁଆର ମୁହଁରେ ଠିଆ ହୋଇ ପାଟି କରୁଥିଲା ଆଉ ଗାଁ ଲୋକ ସବୁ ଠିଆହୋଇ ତା' ବିକାର ଦେଖୁଥିଲେ। କୁନି ଶନିଆର ହାତ ଟାଣି ଘର ଭିତରକୁ ଆଣୁଥିଲା, ଶନିଆ ହାତ ଛାଟିଦେଇ ବାହାରେ ରହିଗଲା ଆଉ ଜୋର ଗଳାରେ ଚିତ୍କାର କରି କୁନିକୁ ଗାଳି କରିବାକୁ ଲାଗିଲା । ପଛରେ ଠିଆ ହୋଇଥିବା ବୁଢା ମହାରଣା ନିଜ ଶକ୍ତହାତରେ ଶନିଆ ଗାଲରେ ଗୋଟିଏ ବ୍ରହ୍ମଚାପୁଡା ଯେମିତି ଦେଇଛି, ସେ ମଲା କୁକୁଡା ଭଳିଆ ତଳେ ପଡି ଛଟପଟ ହୋଇ ହୋଇ ଶୋଇପଡିଲା ।

ଦିପହର ବେଳକୁ କୋଠଘର ଦୁଆରେ କବିରାଜ ଆଜ୍ଞା ସଭାଡାକିଲେ। ଗାଁ ଲୋକଙ୍କ ଆଗରେ ସବୁକଥା ରଖିଲେ । ଆଶ୍ଚର୍ଯ୍ୟ ଜନକ ଭାବେ ସମସ୍ତେ କୁନିକୁ ସାହାହେଲେ ସିନା ଶନିଆ କଥା କେହି ତୁଣ୍ଡରେ ଧରିଲେ ନାହିଁ। ଶନିଆ ନିଶାରେ ଥାଇ ଖାଲି ଚିତ୍କାର କରୁଥିଲା, ହେଲେ କେହି ତା'କଥାକୁ ଶୁଣିଲେ ନାହିଁ। ସଭା ମଝିରୁ ଉଠି ସେ ତଳି ତଳି କୁଆଡେ ଚାଲିଗଲା । ସଞ୍ଜବେଳକୁ କୁନିର ବାପାମା' ଆସି ଗାଁରେ ପହଞ୍ଚିଲେ। ଏତେ ସବୁ ଘଟଣା ଘଟିଗଲା, ହେଲେ ଝିଅ ତାଙ୍କୁ କିଛି ଖବର ଦେଇନି ବୋଲି ଦୁଃଖ କଲେ। କୁନିବୋଉ କହୁଥିଲେ, ସେ ସରପଞ୍ଚ ପଦ ଛାଡିଦେ। କ'ଣ ହେବ, ନିଜର ସଂସାର ଛାରଖାର ହେଲା ବେଳକୁ ଗାଁକୁ ଉଦ୍ଧାର କରିବାକୁ କାହିଁକି ଯାଉଛୁ। ହେଲେ କୁନି ବାପା ଝିଅକୁ ସାହସ ଦେଇ କହିଲେ, ଯାହା ସେ ଠିକ୍ ଭାବୁଛି ସେ କରିବ। ଆଉ ଆମ ଝିଅତ କିଛି ଖରାପ କାମ କରୁନି। ଶାଶୁଶଶୁରଙ୍କୁ ଡାକି ଆଣିଥିବା ଶନିଆ ସେମାନଙ୍କ ବଦଳା ସ୍ୱରୂପ ଦେଖି ଆହୁରି ଅଧିକ ବିରକ୍ତ ହୋଇ କାଠଫାଳିଆଟିଏ ଧରି କୁନିକୁ ମାରିବାକୁ ଉଦ୍ୟତ ହେଉଥିବା ବେଳେ, ଅଗଣାରେ ଥିବା ଶିଉଳୀରେ ପାଦଖସି ପଡିଗଲା। ମୁଣ୍ଡଫାଟି ଝର ଝର ରକ୍ତ ବହିଗଲା। ସାତଦିନ ଯାଇ ସହରରେ ହସ୍ପିଟାଲ୍‌ରେ ରହିବାପରେ ଘରକୁ ଫେରିଲା।

ଦୁଇଦିନ ଶନିଆ ଘରୁ ବାହାରିଲା ନାହିଁ ସତ କିନ୍ତୁ କୁନିକୁ ସେ ଆଡ ଆଖିରେ ହିଁ ଦେଖିଲା। କୁନିକୁ କିଛି ଭଲ ଲାଗୁ ନଥିଲା। ହେଲେ ସେ ଥିଲା ନିରୁପାୟ। ରାଜଧାନୀରୁ ଚିଠିଆସିଲା ସବୁ ସରପଞ୍ଚମାନେ ଯାଇ ସଭା କରିବେ ବୋଲି, ପ୍ରଥମ ଥର କୁନି ଏକାଏକା ସଭା କରିବାକୁ ଗଲା। ଶନିଆ ଯିବାପାଇଁ ମନା କରି ଦେଇଥିଲା। ରାଜଧାନୀରେ କୁନିର କାମର ବହୁତ ପ୍ରଶଂସା ହେଉଥିଲା। ଜଣେ ମହିଳା ସରପଞ୍ଚ ହେବା ସତ୍ତ୍ୱେ ବହୁତ ଅଧିକ କାମ କରି ସେ ସବୁଠାରୁ ଅଧିକ ପ୍ରଶଂସା ପାଇଥିଲା, ମାତ୍ର ତାକୁ ଖାଲି ଖାଲି ଲାଗୁଥିଲା। ଆଜି ଯଦି ତା ସ୍ୱାମୀ ତା ସହିତ ଥାଆନ୍ତେ, କେତେ ଖୁସି ସେ ହୋଇଥାନ୍ତା। ଦି ଦିନପରେ ଘରକୁ ଫେରିଲା ବେଳକୁ ଘରର କାୟା ବଦଳି ଯାଇଥିଲା। ସବୁ ଜିନିଷ ପତ୍ର ଏଣେତେଣେ ବିଛାଡି ହେଇ ପଡିଥିଲା। ଶନିଆ ଘରେ ନଥିଲା, ଘର ଦୁଆର



ଆହ୍ୱାନ
ଓଡିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

ସବୁ ଖୋଲା ଥିଲା । ଲଖୀବୋଉ ଆସି କହିଲେ ଶନିଆକୁ ପୋଲିସ୍ ନେଇଯାଇଚି । ଦିପହର ବେଳକୁ ପୋଲିସ ଆସିଥିଲା, ଘର ସାରା ଖାନ୍‌ତଲାସି କରି ଗଞ୍ଜେଇ ଧରିଲା ଆଉ ଶନିଆକୁ ଧରି ଚାଲିଗଲା ।

ଥାନାକୁ ଯାଇ କୁନି ଶନିଆକୁ ଛାଡିଦେବାପାଇଁ କହିବା ପରେ ଥାନାବାବୁ ଜଣାଇଦେଲେ ଯେ ସେ ଛାଡିପାରିବେ ନାହିଁ, କାରଣ ସେ ଶନିଆକୁ ଗଞ୍ଜା ସହିତ ଗିରଫ କରିଛନ୍ତି, ଆଉ ସେ କୋର୍ଟକୁ ଚାଲାଣ ହେଇଚି, ଯେତେବେଳ ଯାଏଁ କୋର୍ଟ ଆଦେଶ ଦେବେନି, ସେ ତାକୁ ଛାଡି ପାରିବେନି । କୁନି ରାତି ହେବା ଯାଏଁ ଏପାଖ ସେପାଖ ହେଇ କେତେ ଓକିଲକୁ ଭେଟିଲେ ସୁଧା ଜାମିନ ହେଲାନି । ସେ ନିରାଶ ହେଇ ଘରକୁ ଫେରିଲା ବେଳକୁ ତା'ଦୁଆରେ ଗହଳି ଦେଖି ଛାତି ଭିତରେ କାହିଁକି ପାପ ଛୁଇଁଲା । ପାଖକୁ ଯାଉ ଯାଉ ବାଟରୁ ଲଖୀବୋଉ ତା ହାତଟାଣି, କାହ୍ନୁଆ ଗଉଡଘର ଗୁହାଳ ପାଖରୁ ଭିତରକୁ ନେଇ କହିଲା, ଆଜି ଘରକୁ ଯାଆନା, କେତେ ସବୁ ଅଜଣା ଲୋକ ଆସି ତୋ ଦୁଆରେ ଠିଆହୋଇ ପାଟି ତୁଣ୍ଡ କରୁଛନ୍ତି, କହୁଛନ୍ତି, ତୁ କୁଆଡେ ତୋ ସ୍ୱାମୀ ସହିତ ମିଶି ନିଶା ବେପାର କରୁଥିଲୁ ବୋଲି । କୁନି ଆଉ ନିରୁପାୟ ହେଇ ମୁଣ୍ଡରେ ହାତେ ଓଢଣୀ ଦେଇ ଲଖୀ ଭାଉଜ ଘରେ ପଶିଗଲା ଆଉ ରାତିସାରା ସେମିତି ରହିଲା । ରାତି ଅଧାହେବାପରେ ତା ଦୁଆରୁ ଗହଳି ହଟିଲା ପରେ ନିଜ ଘରକୁ ଆସି ଶୋଇବାକୁ ଚାହୁଁଥିଲା ମାତ୍ର ଲଖୀ ଭାଉଜ ଛାଡିଲେ ନାହିଁ ।

ସକାଳୁ ସକାଳୁ ଗାଁରେ ସଭାସମିତି ଆରମ୍ଭ ହୋଇଗଲା । ଗାଁ ମଝିରେ ମାଇକ୍ ଲଗେଇ କିଛି ଲୋକ କୁନଇ ଆଉ ତା ସ୍ୱାମୀ ବିରୋଧରେ ଭାଷଣ ଦେଲେ । କୁନି କବିରାଜଙ୍କୁ ଖବର ଦେବାପାଇଁ ଲଖୀକୁ ପଠାଇଥିଲା, ହେଲେ କବିରାଜ ନିଜ ପ୍ରାଣଭୟରେ ଗାଁ ଛାଡି ଚାଲିଯାଇଥିଲେ ଆଉ ଚିଠି ଦେଇଥିଲେ କୁନିପାଇଁ, ସେ ବି ଗାଁ ଛାଡି ଚାଲିଯିବା ପାଇଁ, ଏ ସବୁ ନାଟ ବିରୋଧୀ ଦଳଙ୍କ ବୋଲି ଲେଖିଥିଲେ । ସେ ଯା'ହେଉ ଦିପହର ବେଳକୁ ଗାଁ ମଝିରେ ଚାଲିଥିବା ନାଟର ଅବସାନ ଘଟିଲା ଯେତେବେଳେ ପଞ୍ଚାୟତ ସମିତି ଚେୟାରମେନ୍ ଆସି ସବୁଲୋକଙ୍କୁ ସେଠାରୁ ହଟିଯିବାପାଇଁ କହିଲେ । କୁନି ସାମାନ୍ୟ ଆଶ୍ୱସ୍ତ ହୋଇ ଥାନାକୁ ଯାଇ ଶନିଆକୁ କିଛି ଖାଇବାକୁ ଦେବାପାଇଁ ବାହାରୁଥିଲା, ଏହି ସମୟରେ ଥାନାଗାଡି ଆସିଲା, ସେ ଖୁସି ହେଇଗଲା, ତା ସ୍ୱାମୀ ଖଲାସ ହୋଇଥିବା କଥା ଭାବି ମାତ୍ର ଯାହା ଶୁଣିଲା ସେଥିରେ ସେ ବିଶ୍ୱାସ କରି ପାରିଲା ନାହିଁ, ଶନିଆ ହାଜତ ଭିତରେ ଆତ୍ମହତ୍ୟା କରିବାପାଇଁ ଚେଷ୍ଟା କରିଥିଲା ।

କୁନିର ଚେତା ପଳାଇଲା । ଚେତା ଆସିଲା ବେଳକୁ ସେ ଡାକ୍ତରଖାନାରେ ଖଟିଆରେ ଶୋଇଥିଲା । ପାଖରେ ଲଖୀ ଠିଆ ହୋଇଥିଲା । ସ୍ୱାମୀଙ୍କୁ କଣ ହେଲା ବୋଲି ଚିନ୍ତା କଲା । କବିରାଜ ଆଜ୍ଞା ଆସିଥିଲେ । କହିଲେ ସବୁ ଠିକ୍ ଅଛି । ବିରୋଧୀଦଳ ଏ ସବୁ ନାଟ କରୁଛି । ସନ୍ଧ୍ୟାବେଳକୁ କୁନିଥାନା ଆଗରେ ଧାରଣା ଦେଇ ବସିଲା । ଥାନାବାବୁ ଆସି ବୁଝେଇଲେ, ହେଲେ ସେ ମାନିବାକୁ ନାରାଜ । ଖବର ଗଲା ଜିଲ୍ଲାପାଳଙ୍କ ପାଖକୁ, ସେ ତୁରନ୍ତ ନିଜ ଗାଡିରେ ବାହାରି ପଡିଲେ କଥା କ'ଣ ବୁଝିବାପାଇଁ । ଗାଁର ଅଧା ଲୋକ ଥାନା ଆଗରେ ଠିଆ ହୋଇଥାଆନ୍ତି । ଜିଲ୍ଲାପାଳ ଆସିଲେ କଥା ବୁଝାଇବାକୁ ଚେଷ୍ଟା କଲେ, ହେଲେ କୁନି ବୁଝିବାକୁ ନାରାଜ । ସେଇଠୁ ରାତି ଆସି ଦଶ ହେଲାଣି । ଗାଁ ଲୋକଙ୍କ ଭିତରେ ରାଗ କୁହୁଳିଲାଣି । ଦେଖୁ ଦେଖୁ ହିଂସା ଆଡକୁ ବଢୁଥିବା ଭିଡକୁ ଦେଖି ଜିଲ୍ଲାପାଳ ସାଙ୍ଗେ ସାଙ୍ଗେ କୋର୍ଟର ମାଜିଷ୍ଟ୍ରେଟ୍‌କୁ ଡକାଇ ଶନିଆକୁ ଘରକୁ ଛାଡିବା ପାଇଁ

ତୃତୀୟ ବର୍ଷ, ପ୍ରଥମ ସଂଖ୍ୟା ଫେବୃଆରି, ୨୦୦୮

ନ୍ୟାସା ନବୋଦିତା ଉପସ୍ଥାପନ କରୁଛନ୍ତି

3rd Year, 1st Issue February, 2008



# ଆହ୍ୱାନ

ଓଡିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

କାଗଜପତ୍ର ଲେଖାଇଲେ।

କୁନି ପୁଣିଥରେ ଯୁଦ୍ଧ ଜିତି ଘରକୁ ଫେରିଥିଲା। ଦ୍ୱିତୀୟ ଦିନ କୋର୍ଟରୁ ଚିଠିଆସିଲା ଶନିଆପାଇଁ, ଦୋଷୀ ସାବ୍ୟସ୍ତ ହେଲାପରେ ଛଅମାସ ମାତ୍ର ଜେଲ୍ ଦଣ୍ଡ ହୋଇଥିଲା ତା'କୁ। କିନ୍ତୁ ଜେଲ୍‌ରୁ ଫେରିଲା ପରେ ଶନିଆ ବଦଳି ଯାଇଥିଲା। ମଦର ନିଶା ଛାଡିଯାଇଥିଲା। ଶନିଆ ଭଲ ଲୋକ ହୋଇଯାଇଥିଲା, ଆଉ କୁନି ପୁଣି ଦ୍ୱିତୀୟ ଥର ପାଇଁ ସରପଞ୍ଚ ହେବାକୁ ଯାଉଥିଲା।

## ବିଶେଷ ସୂଚନା

ବିଗତ ଦୁଇ ଦଶନ୍ଧି ଭିତରେ ଓଡିଶାର ରୂପରେଖ ଅନେକାଂଶରେ ବଦଳି ଯାଇଛି, ଏହାର ଗୋଟିଏ କାରଣ ହେଉଛି ଦୃତ ସହରୀକରଣ, ଏବଂ ଅନ୍ୟ ଏକ କାରଣ ହୋଇପାରେ ସୂଚନା ଓ ପ୍ରଯୁକ୍ତିବିଦ୍ୟାର ବହୁଳ ପ୍ରଭାବ। ଓଡିଶାରେ ଇଣ୍ଟର୍‌ନେଟ୍‌ର ବ୍ୟବହାର ଦୁଇ ଦଶନ୍ଧିରୁ କିଛି ଅଧିକ ସମୟର ହେବ। ଏହି ସମୟ ଭିତରେ ଇଣ୍ଟର୍‌ନେଟ୍ ଆମ ଜୀବନକୁ ବହୁଳ ଭାବରେ ପ୍ରଭାବିତ କରି ସାରିଲାଣି। ଆଜି ଓଡିଶାର ସହର ସମେତ ପ୍ରାୟ ଊଣାଧିକେ ସମସ୍ତ ପୁରପଲ୍ଲୀରେ ବି ଏହି ବ୍ୟବସ୍ଥା ଉପଲବ୍ଧ ହୋଇ ସାରିଲାଣି। ଜୀବିକାନିର୍ବାହ ପାଇଁ ଯୁଗ ଯୁଗରୁ ବିଦେଶ ଯାଇ ଖଟିଖିଆ ଭାବେ କାମ କରୁଥିବା ଓଡିଆ ଲୋକେ ଏବେ ଇଣ୍ଟର୍‌ନେଟ୍ ମାଧ୍ୟମରେ ନିଜ ପରିବାର ଓ ନିଜ ରାଜ୍ୟ ସହ ସଂପର୍କ ସ୍ଥାପନ କରୁଛନ୍ତି। ଏହି ସମସ୍ତ ବ୍ୟବସ୍ଥା ଭିତରେ କେବଳ ପୁରୁଷ ମାନେ ହିଁ ନୁହେଁ ବରଂ ସ୍ତ୍ରୀ ମାନେ ବି ବହୁତ ଆଗଭର ହେଲେଣି। ଆଜି ଉତ୍କଳୀୟ ନାରୀର ବସନରେ ପାଶ୍ଚାତ୍ୟ ଶୈଳୀର ନିଦର୍ଶନ ଦେଖିବାକୁ ମିଳିଲାଣି, ବ୍ୟବହାର ଓ ଚାଲିଚଳଣରେ ବି ପାଶ୍ଚାତ୍ୟ ଢଙ୍ଗଢାଙ୍ଗର ଛାପ। ଇଣ୍ଟର୍‌ନେଟ୍‌ରେ ବସି ସୁଦୂର ଅଜଣା ସହର ପ୍ରାନ୍ତର କୌଣସି ବ୍ୟକ୍ତି ସହ ଘଣ୍ଟା ଘଣ୍ଟା ଚାଟିଂ କରିବାକୁ ଭଲ ପାଉଥିଲା ଆଜିର ଓଡିଆ ନାରୀର ବିଭିନ୍ନ ସମସ୍ୟା ଆଉ ତାହା ପାଇଁ ସମାଧାନ ସମେତ, ଦିନଚର୍ଯ୍ୟା, ରୋଷେଇ ଓ ରାନ୍ଧଣା ଆଦି ଅନେକ ବିଷୟ ବସ୍ତୁକୁ ନେଇ ଆହ୍ୱାନର ଏକ ନୂତନ ଉପସ୍ଥାପନ ହେଉଛି 'ନବୋଦିତା'। କେବଳ ଉତ୍କଳୀୟ ନାରୀମାନଙ୍କୁ ସମର୍ପିତ ଏହି ୱେବ୍‌ସାଇଟ୍ ଖୁବ୍ ଶୀଘ୍ର ଉନ୍ମୋଚିତ ହେବାକୁ ଯାଉଛି। ଆଗାମୀ ମାର୍ଚ୍ଚ ମାସ ଆଠ ତାରିଖ ଅନ୍ତରାଷ୍ଟ୍ରୀୟ ମହିଳା ଦିବସରେ ଅନାବୃତ ହେବାକୁ ଥିବା ଏହି ୱେବ୍‌ସାଇଟ୍‌କୁ ସଂପାଦିତ କରିବେ ଶ୍ରୀମତି ପ୍ରୀତି ପ୍ରିୟଦର୍ଶିନୀ ମହାପାତ୍ର। ଏବଂ ତାଙ୍କୁ ସାହାଯ୍ୟ କରିବା ପାଇଁ ସେ ନିବେଦନ କରିଛନ୍ତି ଆହ୍ୱାନର ପାଠକ ପାଠିକା ମାନଙ୍କୁ। ଏହି ୱେବ୍‌ସାଇଟ୍‌ରେ ଉପସ୍ଥାପିତ ହେବାକୁ ଥିବା ବିଭିନ୍ନ ବିଭାଗ ପାଇଁ ସେ ଆହ୍ୱାନ କରୁଛନ୍ତି ଉଚ୍ଚମାନର ଲେଖା। ଯାହା ସେ ଆଗାମୀ ଦିନ ମାନଙ୍କରେ ନବୋଦିତା ୱେବ୍‌ସାଇଟ୍‌ରେ ଉପସ୍ଥାପନ କରି ପାରିବେ।

ଆପଣଙ୍କ ଏହି ଲେଖା ସଂପୂର୍ଣ୍ଣରୂପେ ମୌଳିକ ହୋଇଥିବ, ଏବଂ ଆପଣ ଏହାର ସ୍ରଷ୍ଟା ହୋଇଥିବେ। ଯଦି ଆପଣ ଅନ୍ୟ କୌଣସି ଲେଖକଙ୍କ ଲେଖାକୁ ଅନୁକରଣ କରି କିମ୍ବା ଅନୁବାଦ କରି ଏହି ଲେଖା ଲେଖିଥିବେ, ତେବେ ସେହି ଲେଖକଙ୍କ ବିବରଣୀ ଆପଣଙ୍କୁ ଆମ ପାଖରେ ଦେବାକୁ ହେବ। ସମସ୍ତ ଲେଖା ଗୁଡିକ ଆମ ଦ୍ୱାରା ବଛାଯାଇ ସର୍ବୋତ୍କୃଷ୍ଟ ଲେଖାକୁ ନବୋଦିତାରେ ସ୍ଥାନ ଦିଆଯିବ। କେବଳ ୫୦୦ ଶବ୍ଦ ଭିତରେ ସୀମିତ ହୋଇଥିବା ଆପଣଙ୍କ ଲେଖା ଆପଣ ଆମ ପାଖକୁ ଇ-ମେଲ୍ ମାଧ୍ୟମରେ କିମ୍ବା ପତ୍ର ଦ୍ୱାରା ପ୍ରେରଣ କରି ପାରିବେ। ଆପଣ ଦେଉଥିବା ଲେଖା ଗୁଡିକ ନିମ୍ନରେ ଦିଆଯାଇଥିବା ବିଭିନ୍ନ ବିଷୟ ବସ୍ତୁରୁ ଯେ କୌଣସି ଗୋଟିଏ ଉପରେ ଆଧାରିତ ହୋଇଥିବା

ତୃତୀୟ ବର୍ଷ, ପ୍ରଥମ ସଂଖ୍ୟା ଫେବୃଆରି, ୨୦୦୮

3rd Year, 1st Issue February, 2008

ନ୍ୟାସା ନବୋଦିତା ଉପସ୍ଥାପନ କରୁଛନ୍ତି



# ଆହ୍ୱାନ

ଓଡ଼ିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟିକ ଇ-ପତ୍ରିକା

ଆବଶ୍ୟକ ।

୧ ନାରୀ ସମ୍ବନ୍ଧୀୟ ରଚନା

୨ ଅନ୍ତରାଷ୍ଟ୍ରୀୟ ମହିଳା ଦିବସ

୩ ସ୍ୱାସ୍ଥ୍ୟ

୪ ଚାକିରି ଓ କାର୍ଯ୍ୟକ୍ଷେତ୍ର

୫ ରୋଷେଇ ଓ ରାନ୍ଧଣା

୬ ନାରୀ ସୌନ୍ଦର୍ଯ୍ୟ

୭ ଘରକରଣା ଓ ଘର ଚଳାଇବା

୮ ଟିଭି ଓ ସିନେମା

୯ ଆଇନ୍ କାନୁନ୍

୧୦ ଅନ୍ୟାନ୍ୟ

ମନେ ରଖନ୍ତୁ ପ୍ରତ୍ୟେକ ଲେଖା ସହିତ ଆପଣ ନିଜ ବିଷୟରେ ଲେଖି ପଠାଇବେ, ଯଥା ଆପଣଙ୍କ ନାମ, ବୟସ, ଜନ୍ମ ତାରିଖ, ଠିକଣା, ଶିକ୍ଷାଗତ ଯୋଗ୍ୟତା, ଫୋନ୍ ନମ୍ବର, ଇ-ମେଲ୍ ଠିକଣା, ଇତ୍ୟାଦି । ଯଦି ଆପଣ ଆଗକୁ ମଧ୍ୟ ଆମ ୱେବ୍‌ସାଇଟ୍‌ରେ ନିଜ ଲେଖା ନିୟମିତ ଭାବେ ପ୍ରକାଶିତ କରିବାକ ଚାହୁଁଥାନ୍ତି, ତେବେ ଲେଖି ପଠାନ୍ତୁ । ଏତଦ୍ ବ୍ୟତୀତ ଆପଣ ନିଜର ଗୋଟିଏ ଫୋଟୋ ପଠାନ୍ତୁ । ପାସ୍‌ପୋର୍ଟ କିମ୍ବା ସଂପୂର୍ଣ୍ଣ ଫୋଟୋ ପଠାଇପାରନ୍ତି ।

ଲେଖା ପଠାଇବାର ଠିକଣା:

ଶ୍ରୀମତି ପ୍ରୀତି ପ୍ରିୟଦର୍ଶିନୀ ମହାପାତ୍ର
ସଂପାଦିକା, 'ନବୋଦିତା',
ମୁଖ୍ୟ କାର୍ଯ୍ୟନିର୍ବାହୀ ଅଧିକାରୀ
ଆହ୍ୱାନ ଇନ୍‌ଫୋଟେକ୍
ବୀମା ନଗର, ଆମ୍ବପୁଆ ମୁଖ୍ୟ ରାସ୍ତା
ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା
ଫୋନ୍: ୦୯୮୬୧୨୨୭୧୧୧ କିମ୍ବା ୦୯୯୩୮୫୧୭୫୦୫
କିମ୍ବା ୦୯୮୬୧୯୬୨୧୬୦
ଇ-ମେଲ୍: nabodita@aahwaan.com

## ସୂଚନା

ଆହ୍ୱାନ ପତ୍ରିକାର ଚଳିତ ସଂସ୍କରଣ ଆପଣଙ୍କୁ କେମିତି ଲାଗିଲା ଆମକୁ ନିଶ୍ଚୟ ଜଣାଇବେ । ଆପଣଙ୍କ ମତାମତ ଆମକୁ ଆଗକୁ ବଢିବାକୁ ସାହାଯ୍ୟ ହେବ । ଆଗାମୀ ସଂସ୍କରଣ ମାନଙ୍କରେ ଆପଣ ଯେଉଁ ସବୁ ବିଷୟରେ ପଢିବାକୁ ଚାହାନ୍ତି, ତାହା ଆମକୁ ଲେଖି ପଠାନ୍ତୁ ।

## ଆମ ଠିକଣା

ଶ୍ରୀମତି ପ୍ରୀତି ପ୍ରିୟଦର୍ଶିନୀ ମହାପାତ୍ର
ଆହ୍ୱାନ ଇନ୍‌ଫୋଟେକ୍
ବୀମା ନଗର, ଆମ୍ବପୁଆ ମୁଖ୍ୟ ରାସ୍ତା
ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା

ଫୋନ୍: ୦୬୮୦-୩୨୯୬୫୩୨
ମୋବାଇଲ୍: ୦୯୯୩୮୫୧୭୫୦୫ /